# ଗୀତିଗୁଚ୍ଛ



ଶ୍ରୀ ନନ୍ଦ କିଶୋର ସିଂହ, ବି.ଏ.ବି.ଇଡ.
( ବେତାର ଗୀତିକାର )

# ଗୀ ତି ଗୁ ଚ୍ଛ

(ଆଧୁନିକ)

ଲେଖକ:—

ଶ୍ରୀ ନନ୍ଦକିଶୋର ସିଂହ

ବି.ଏ.ବି.ଇଡ଼.(ବେତାର ଗୀତିକାର)

ପ୍ରକାଶକ :—

ବୈତରଣୀ ଆର୍ଟ ପ୍ରେସ

ଗୁହଦବାଲି ଜି: ବାଲେଶ୍ୱର

ପ୍ରଥମ ପ୍ରକାଶ:—

୧୩୭୮ସାଲ ଶୁଭ ସୁନିଆଁ ତା୧୨-୯-୭୦ରିଖ

ପ୍ରାପ୍ତି ସ୍ଥାନ :—

ଓଡ଼ିଶାର ସମସ୍ତ ପ୍ରସିଦ୍ଧ ବହିଦୋକାନ

ବୈତରଣୀ ଆର୍ଟପ୍ରେସ, ଗୁହଦବାଲି

ଜି-ବାଲେଶ୍ୱର

ଓ

ଶ୍ରୀ ନନ୍ଦ କିଶୋର ସିଂହ ଗ୍ରା ପୋ କୋଦାଳ

ଜି-କଟକ

ମୂଲ୍ୟ—ଏକଟଙ୍କା ମାତ୍ର

## କେଇପଦ ମୋ ନିଜ କଥା:—

ଯେଉଁ ସାଧିକାର ସୁନ୍ଦର ହସ୍ତଲିପି ଆଜ ଏ ପୁସ୍ତକଟିର ଆତ୍ମ ପ୍ରକାଶରେ ସାହାଯ୍ୟ କରିଛି ସେଇ "ସୁ" ହାତରେ ଟେକିଦେଲି ଗୀତ ଗୁଚ୍ଛ ।

ଯେଉଁ ମହାଶୟଙ୍କ ପ୍ରେରଣାରେ ଆଜ ଏଇ ପୁସ୍ତକଟି ଜନକ ଲୋଚନକୁ ଆସିଛି ସେଇ **ସୁରଜ କିଶୋର ରାୟଙ୍କ** ପାଖେ ମୁଁ ଚିର କୃତଜ୍ଞ ।

ଏଇ ପୁସ୍ତକରେ ସନ୍ନିବିଷ୍ଟ ଗୀତ ଗୁଡ଼ିକ ଭିତରୁ କେତୋଟି ଆକାଶ ବାଣୀରୁ ପ୍ରଚାରିତ । କେତୋଟି ପତ୍ରିକାରେ ପ୍ରକାଶିତ ।

ବିନୀତ

**ଗୀତିକାର**

# ଗୀତି ଗୁଚ୍ଛ ଆଉ ଗୀତିକାର

ଆଧୁନିକ ଗୀତି କବିତାର ଅପୂର୍ବ ଛନ୍ଦ ନେଇ ଆତ୍ମ ପ୍ରକାଶ କରୁଛି ଓଡ଼ିଶାର ସୁପରିଚିତ ବେତାର ଗୀତିକାର ଶ୍ରୀ ନନ୍ଦକିଶୋର ସିଂହଙ୍କର "ଗୀତିଗୁଚ୍ଛ" । ଗୀତିଗୁଚ୍ଛର ପ୍ରତ୍ୟେକ ପାଖୁଡ଼ାରେ ଭରି ରହିଛି ବିରହ ବିଚ୍ଛେଦ, ମିଳନ ଆଶ୍ଳେଷ, ସ୍ନେହ ଓ ସୋହାଗ, ହସ ଆଉ ଅଶ୍ରୁ, ସତ୍ୟ ତଥା ସୁନ୍ଦର, ରୂପ ଆଉ ରସ ଏବଂ ପ୍ରୀତି ଓ ପରସ୍ପର ପ୍ରାଣଭରା ଅଫୁରନ୍ତ ମହକ । ପ୍ରଣୟୀର ସ୍ପର୍ଶ ପାଇଁ ଜହ୍ନ ଚିଠି ଲେଖିଛି କଇଁଫୁଲକୁ, ବସନ୍ତର ଫୁଲ ଲଫାପାରେ ଗୋଲାପି ଚିଠି ପ୍ରିୟ ମୋର ପ୍ରୀତି ଉପହାର ହୋଇ ଝରି ପଡ଼ୁଛି, ବିରହୀର ଲୁହ ଟୋପିକରେ ସୃଷ୍ଟି ହେଉଛି କୋଟି ଇତିହାସ । ପ୍ରଣୟିନୀର କବରୀ ପାଇଁ ଝୁରି ମରୁଛି କନକ ଚମ୍ପା, ପ୍ରେମିକ ପ୍ରେମିକା ନିକଟରେ ଅଭିମାନ କରି ନିଜକୁ ଘାସ ଫୁଲରେ ଆତ୍ମ ପ୍ରକାଶ କରୁଛି । ରୂପସୀର ଅଙ୍ଗରେ ରୂପର ଅରଣ୍ୟ ମୂର୍ତ୍ତି ନେଉଛି । ଗୀତିକାରଙ୍କ ଆଖିରେ ଯୌବନ ଏକ ଲତା ଲାଜ ନୀର କଳି ଆଉ ମିଳନ ସେଠାରେ କୋଇଲି । ପୁଣି କେବେ ଅଶାନ୍ତ ଆଭୁଲ ସ୍ମୃତି ପାଇଁ ପ୍ରିୟ ପ୍ରିୟା ଆତ୍ମହରା ହୋଇ ଗାଇ ଉଠନ୍ତି, କାଲିର ସପନ ତୁମେ ଆଜିତ ଗୋ ଆସିବ, କାଲିର କୁନି କୁନି ପାପୁଲିରେ ଚୁନି ଚୁନି ସାମୁକା ଗୋଟା ହାତରେ ପ୍ରଜାପତିର ରଙ୍ଗ । ପ୍ରେମିକା କେବେ ଗମ୍ଭୀର ଆତ୍ମଗ୍ଳାନିରେ ଗାଇଉଠନ୍ତି "ଓଠରୁ ଝରେ ମୋ ମହୁ ଝରେ ପୁଣି ବିଷ" କେବେ ଅବା ସ୍ୱପ୍ନଭଙ୍ଗା ମାଦକ ଭରା କଣ୍ଠରେ ସ୍ୱର ତୋଳନ୍ତି "ତୁମେ ମୋର ନିଦ ହେଲ ତୁମେ ହେଲ ସପନ ଫୁଲ ପକା କଥା ତମ ନରମ ନରମ" । ମୋତେ ତମ ବଗିଚାରେ ଭୁଲିବାକୁ କୁହନି, ଅଥବା ମୁଁ ଯେ ଏକ ପୁଷ୍ପିତ କଳିକା···ଇତ୍ୟାଦି

ପ୍ରଣୟ ପ୍ରଣୟିନୀର ମନ ଗୀତ ଝରା ପଡ଼ିବାକୁ ଆତୁର । ଆଜି କେବେ ବା ଜଣଙ୍କର ଅନୁଶୋଚନାରେ ସେ ଦୀର୍ଘ ଶ୍ୱାସସହ ଗାଇ ଉଠୁଛି ସେ ପ୍ରେମ ବଦାନ୍ୟ, ଅନେକ ଫାଗୁଣ ଯିବ ଆସିବ ଜୀବନେ, ମନ ବୁଲ୍‌ବୁଲ୍ ଗାନେ ମାନସୀ ସନ୍ତାପ କାନ୍ତ ବଗିଚାରେ ଫୁଲ ନାହିଁ, ଅଛି ଖାଲି ଫୁଲର ସେ ମଧୁ...ଇତ୍ୟାଦି ଏମିତି କେତେ କ'ଣ ହୃଦୟ ଥରାଇ ତରଙ୍ଗ ବସୁଥିବ ସେ ଗୀତି ରଚନା ଆଜି ମନ ମତାଣିଆ ମାଦକତା ନେଇ ପୁଷ୍ପିତ ହୋଇଛି ଗୀତିଗୁଚ୍ଛ ସ୍ରଷ୍ଟାଙ୍କର ଭାରତରେ ପ୍ରଣୟୀର ହସ ଅଶ୍ରୁ ଓ ଦୀର୍ଘ ଶ୍ୱାସରେ— ପ୍ରଣୟିନୀର ନବତ୍ୱ ବୟସର ରୂପରସ ଆଜି ଢଙ୍ଗରେ ନାରଙ୍ଗୀ ହୋଇଛି ଶବ୍ଦ ଯୋଜନା, ଭାଷା ଓ ଭାବ । ପରିପୁଷ୍ଟ ଓ ସମୃଦ୍ଧ ଗୀତିଗୁଚ୍ଛର ପ୍ରତିଟି ଶବ୍ଦ ପ୍ରତିଟି ଧାଡ଼ି ସତେ ଯେମିତି ମିଳନର ଯମୁନା ତୀରରେ ପ୍ରେମର ବୃନ୍ଦାବନ ସ୍ୱୟଂ ସମ୍ପୃକ୍ତ ରାଧାକୃଷ୍ଣ ରୂପୀ ପ୍ରଣୟୀ ଯୁଗଳଙ୍କର, ରାସ ଲୀଳା ରୂପକ ଅପୂର୍ବ ଶବ୍ଦ ଛନ୍ଦ ଓ ସ୍ୱର ଯୋଜନାରେ ଏହା ଯେ କେବଳ ପରିପୁଷ୍ଟ ପରିପୋଷିତ ଓ ସମୃଦ୍ଧ ସେତିକି ନୁହେଁ ବରଂ ଅତୁଳ ପାଦେ ଆଗେଇ ଯାଇ ଉତ୍କଳର ପୁରପଲ୍ଲୀରେ ଏହା ଯେଉଁ ମଧୁ ଝଙ୍କାର ତୋଳିଛି । ତାହାର ମହତ୍ତ୍ୱ ଯେ ଅଧିକାଂଶଙ୍କୁ ଅନୁମାନ କରିଛି । ଏହା ନିଃସନ୍ଦେହ ।

ଏତ ଗଳ୍ପଗୀତି ଗୁଚ୍ଛର କାହାଣୀ ଗୀତିଗୁଚ୍ଛର ଗୀତିକାର ମୋର ପ୍ରିୟ ବନ୍ଧୁ ଶ୍ରୀନନ୍ଦକିଶୋର ହବି.ଏ.ବି.ଇଡ଼୍ କୁ ପରିଚୟ କରି ଦେବାର ଧୃଷ୍ଟତା ମୁଁ କରୁନାହିଁ କାରଣ ଉତ୍କଳର ପ୍ରତି କୋଣରେ ନନ୍ଦବାବୁ ଜଣେ ଶ୍ରେଷ୍ଠ ଗୀତିକାର ଭାବେ ସୁପରିଚିତ ଯାହାଙ୍କର ଗୀତି ଓଡ଼ିଶାର ବେତାର କେନ୍ଦ୍ରଗୁଡ଼ିକରେ ସୁଲଳିତ ଝଙ୍କାର ତୋଳୁଛି ପ୍ରସିଦ୍ଧ ଶିଳ୍ପୀମାନଙ୍କର ମଧୁର କଣ୍ଠରେ । ଭୂମିକା ପରେ ସେ ସବୁକାର୍ଯ୍ୟ ଜଡ଼ ବନ୍ଦ୍ୟାଳ—

ସ୍କୁଲର ବର୍ତ୍ତମାନ ଜଣେ ଆଦର୍ଶ ଶିକ୍ଷକରୂପେ କାର୍ଯ୍ୟ କରୁଛନ୍ତି ଅଧ୍ୟାପନାର ଗୁରୁଦାୟିତ୍ୱ ସୁଷ୍ଠୁ ରୂପେ ତୁଲାଇବା ସଙ୍ଗେ ସଙ୍ଗେ ଆଧୁନିକପଲ୍ଲୀ ତଥା ଓଡ଼ିଶୀଆଦ୍ୟ ସଂଗୀତ ରଚନା କରି ଉତ୍କଳୀୟମାନଙ୍କର ମନ ବିନୋଦନ କରିବା ଓ ଉତ୍କଳ ସାହିତ୍ୟକୁ ସମୃଦ୍ଧ କରିବାରେ ସେ ସେପରି କର୍ମରତ ଅଛନ୍ତି, ସେଥିପାଇଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ନଦେଇ ରହି ପାରୁନାହିଁ । ନନ୍ଦବାବୁ ଏକାଧାରରେ ଜଣେ ସାହିତ୍ୟିକ, କବି, ଗୀତିକାର, ନାଟ୍ୟକାର ତଥା କଳାକାର ମଧ୍ୟ । ତାଙ୍କର କର୍ମପ୍ରେରଣା ଯେ ତାଙ୍କୁ ଓଡ଼ିଶାର ଇତିହାସରେ ଅମର କରି ରଖିବ, ଏହା ମୋର ଆତ୍ମବିଶ୍ୱାସ । ବନ୍ଧୁଙ୍କ ସହ ରାଜକନିକା ଗାନ୍ଧୀ ଜନ୍ମ ଶତ ବାର୍ଷିକ ସମିତି ମାଧ୍ୟମରେ ମୋର ପ୍ରଥମ ପରିଚୟ ୧୯୬୯ ରେ । ସେତେବେଳେ ସେ ରାଜକନିକା ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରୁଥାନ୍ତି ତା ପରେ ଆମର ଘନିଷ୍ଠତା । ଶେଷରେ ଗତ ଏପ୍ରିଲ ୧୯୭୦ରେ କଥା ପ୍ରସଙ୍ଗରେ ମୁଁ ନନ୍ଦବାବୁଙ୍କୁ ଅନୁରୋଧ କରେ ନନ୍ଦବାବୁ ! ଆପଣଙ୍କ ଗୀତଗୁଡ଼ିକ ଛପାଉ ନାହାନ୍ତି କାହିଁକି ? ଉତ୍ତର ମିଳିଲା, ଆପଣ ପ୍ରକାଶକର ଦାୟିତ୍ୱ ନିଅନ୍ତୁ । ମୁଁ କହିଲି "ହେଉ" । ସେହି "ହେଉ" ମଧ୍ୟରୁ ଆଜି ଗୀତିଗୁଚ୍ଛଟି ଆତ୍ମପ୍ରକାଶ କରୁଛି । ଏହାର ପ୍ରକାଶ ରାଜ ବୈତରଣୀ ଆର୍ଟ ପ୍ରେସ ତରଫରୁ ଶ୍ରୀଯୁକ୍ତ ରାମକୃଷ୍ଣ ନାୟକ ଗ୍ରହଣ କରୁଥିବାରୁ ତାଙ୍କୁ ମୋର ଭକ୍ତି ଓ କୃତଜ୍ଞତା ଜଣାଉଛି । ଗୀତିଗୁଚ୍ଛ ଉତ୍କଳର ପୁର ପଲ୍ଲୀରେ ବିଶେଷ ଆଦୃତ ହେବ ବୋଲି ଆତ୍ମ ବିଶ୍ୱାସ ରଖି ରହିଲି । ଇତି ।

ତାଳଭର
ତା ୩୧-୮-୭୦
ମହାସ୍ତବ ଅମାବାସ୍ୟା

ଶ୍ରୀ ଯୁଗଳ କିଶୋର ରାୟ
ଏମ୍. ଏ. ବି.କମ୍. ବି.ଇଡ୍.
ପ୍ରଧାନଶିକ୍ଷକ ତାଳଭର ଉଚ୍ଚବିଦ୍ୟାଳୟ

ବିଷୟ ସୂଚୀପତ୍ର ପୃଷ୍ଠା

ଶିଳ୍ପୀର ସପନ ଦେଖେ ଫୁଲର ମନରେ
ତୁମରି ଏଇ ମାଟି କେତେଫୋଟି ବସନ୍ତ ୧୫
ଆଖି ଆଖି ଆମ ଦେଖେ ତେଣୁ ଇଯାଏ ମିଳନ
ତୁମକୁ ଭୁଲିବା ପାଇଁ ସେତିକି ମୁଁ କରୁଛି ସାଧନା ୧୬
ମନ କାଗଜରେ ସେଇ କେତୋଟି ଅକ୍ଷର
ଭଅଁର ସ୍ୱର ତ ସହେନା ବୁକେ ୧୬
ଓଠରୁ ଝରେ ମୋ ମଧୁ ଝରେପୁଣି ବକ୍ଷ
ବସନ୍ତର ନନ୍ଦନ ପରଶ ୧୭
ତୁମ ଆମ ପରିଚୟ ମନ ବନମୟ
ତୁମେ ମୋର ନଇ ହେଲ ତୁମେହେଲ ସପନ ୧୮
ଓଠ ଫୁଟିଲ ଝରିଗଲ ହସରବାସନା
ଫୁଲ ପକା କଥା ତମ ନରମ ନରମ ୧୯
ଯୋଉଁ ତମ ବଗିଚାରେ ବୁଲିବାକୁ କୁହନି
ତେବେ ପ୍ରେମ ବଢାଅ ୨୦
ମୁଁ ଏକ ଅତି କାଙ୍ଗାଳ ବସନ୍ତ କଳିକା
ମୁଁ ହେ ଏକ ପୁଷ୍ପିତ ବସନ୍ତ କଳିକା ୨୧
ତୁମମନ-ଗୀତଖାତା ପଢିବାକୁ ଦେଲନି
ତୁମ ପାପ ଶିଖାରେ ମୁଁ ଆଉ କେଲିକା ନ ହେଲି ପଛ ୨୨
ନନ୍ଦିତ ମୋଏ ଆଖିରେଏତେତମେ ସପନ ଦିଅନ
ଦିନସାରା ନସେଳାରେ ରହିବାକୁ ଦେଲନ ୨୩
ଫୁଲ ଫୁଟା ଫଗୁଣରେ ଫୁଲ ଆଜ ଫଗୁଣ
ତୁମେ ଯେଉଁ ଚିଠି ସବୁ, ମୋ ପାଖକୁ ଦେଇଥିଲ ୨୪
ଟ୍ରେଟ ଟ୍ରେଟ ମିଛ କଥା, ଠିକେ ଠିକେ ଦୁଷ୍ଟାମି
ମୋ ଉପରେ ରାଗି ହବ ମୁହଁକୁ ସୁନ୍ଦରନା ୨୫
ଦିନଟିଏ ନବେଳାରେ ପଢିବାକୁ ଦେଲନ
ଲେଖି ମୋ କେତିକି ଚିଠି ଉତ୍ତମ ଭରି ୨୬

ଅନେକ ଫଗୁଣ ଆସିବ ଯିବନେ
ମେର ଏ ସ୍ନୁଆଲ ଯେତେ ବଡ଼ ଉଠୁ ଢେଉ ୧୭
ନଈ ନଡ଼ ଫଟା ପାଇଁ ଚିଠି ଆଉ ଲେଖନା
ଜିଉ ଚିଠି ଲେଖିଲେବ ଫଟୋଟିଏ ପଠେଉନା ୧୮
ତୁମକୁ କହୁଛି ସବୁ ଥିଲା ଯାହା ଗୋପନ
ଲାଜ କୁଳୀ କୁଆଁ ଖା ମୁଁ କଅଁଳ ମୋ ମନ ୧୯
ତମେ ଜାଣେ ଆଜ କାଲି କେଡୁଟିଏ ହେଲଣି
ଆଜ କାଲି ତମେ ଆଉ ଇଅଣ୍ଡେ ଆସୁନ ୨୦
ମୁଁ ଭାବେ ଏବେ ଖୁବ୍ ବଡ଼ ହୋଇ ଗଲଣି
ଆଗେ ଖେଳୁଥିଲ ଖେଳ ହାତରେ ଗୋଡ଼ରେ ୨୧
ଆଖିରେ କହୁଛ ଏବେ ଆସୁନା ଅସୁନା
ବଗିଚାରେ ଫୁଲ ନାହିଁ ଅଛି ଖାଲି ଫୁଲରତ ମାୟା ୨୨
ମନ ବୁଲିଗଲା ଯଦି ମାନସୀ ସହର
ଯଉବନ କୋଠରୀରେ ତମେ ମୁଁ ମୁଁ ତମେ ୨୩
ସୂର୍ଯ୍ୟ ଉଠିଲେ ପ୍ରଥମେ ଖୋଜିବ ମୋ ପ୍ରେମିକା ଗାଆରେ
ଘରଟିଏ ଜାଳିଥିଲ ମୋର ଏଇ ସମାଧି ଖାଇରେ ୨୪
ତାହା ତୁମେ ଦେଖୁଥାଇ ପଡ଼ିଲେ ବି ଥକା
ତୁମକୁ ମୁଁ ଚେତ୍ର କରି ଆଙ୍କିଗଲି ଲହରୀ ପରିଧି ୨୫
ପାରି ହୋଇ ବପୁଷର ଅଙ୍ଗାଶ ଦ୍ରାଘିମା
ମଣିଷ ବସୁ କାନ୍ଦେ ଘା'ରକ୍ତ କୋଣାରକ ୨୬
ମୋ ଆଖିର ପ୍ରଶ୍ନ ପାଇଁ ତମ ଆଖି ଉତ୍ତର
ଆଖି ମୋତେ ଦେଖାଇଛି ତୁମକୁ ଯେ ସପନ ୨୭
କାଠ ଉଆସରେଅଭିଶପ୍ତାମୁଁ ଗୋଲୁପବନ୍ଦୀମହାରାଣୀ
କହୁଛ ଆଅ ପ୍ରିୟ ଏ ମାଧବୀ ରାତେ ବେଶି କେଉଁଅପରାଧ ୨୮

ଗୋଟିଏ ମନର ମାନଚିତ୍ର ତଳେ,ଅନେକ ଆଶାର ଦେଶ
ସ୍ୱଦେଶୀ ପ୍ରଶ୍ନ ମୁଁ ଟଗା, ବାସରେ କି ଜନ୍ମିବ ୩୯
ହେ ମୋର ପ୍ରିୟତମ ନୀଳ ଆଖି ଦୁଇଟି
ତମେ ଖାଲି ରହିଗଲ କିଏ-କିଣ-କାହିଁକି ୪୦
ସମସ୍ତ ବେଳାରେ ବୁଲି ସାଉଁଟି ସ୍ମୃତିର ଶାମୁକା
ସେଦିନ ମୁଁ ଦେଖୁଥିଲି ଏକୁଟିଆ ହସୁଥିଲା ଫୁଲ ୪୧
ସୁଧା ପାନ ପାଇଁ ମୋତେ ପେଇଲ ଜହର
ତୁମେ ତ କହୁଛ ତୁମେ ପ୍ରଶ୍ନପୁ ଜାଣନା ୪୨
ତୁମେ ଯେବେ ପାଶେ ଥାଅ ଶ୍ରାବଣ ମୋ ଫଗୁଣ
ମୁକ୍ତି ମୋତେ ଦେଲି ଯାହା ସିଏ ହେଲା ବନ୍ଧନ ୪୩
ତୁମ ଦେହ ସମୁଦ୍ରର ମୁହଁଟି ତ ଚନ୍ଦ୍ରଭଗା ସୂର୍ଯ୍ୟ
ପାପୁଲି ର ଚଟାଣ ରେ ସମ୍ବନ୍ଧ ର କଥା ତ ଲେଖୁଛ ୪୪
ମୋ ନିଜ ଆଖିରେ ଆଜ ମୋର ମୁହଁ ଦେଖିଛି
ଦିନ ଥିଲା ସିଏ ବହୁଦୂରେ ଥାଇ ଭାବୁଥିଲି ଅଛି ପାଖରେ ୪୫
ସୁଷମା ମୋ ଗଲା ନେଇ ଯାଏ ତା'ର ସୁଷମା
ତୁମେତ ସ୍ମୃତିଭଳି ମୋ ପଲ୍ଲବରେ ବାରେ କେବେ ଆସନାହିଁ ୪୬
ବର୍ତ୍ତମାନ ମୁଁ ଅତୀତକୁ ଖୋଜେ ନାହିଁ ।
ଲିଭି ମୁଁ ଯାଇଛି ଜଳିବାର କିଛି କାମନା ଯାଇଛି ଛାଡ଼ି ୪୭
ତୁମେତ ଦେଖନା ନିରଜନ କୋଣେ ଝରିଯାଏ ବନଫୁଲ
ଅନେକ ଦେଖାରେ ସବୁ କହି ମୁଁ ସାରିଛି । ୪୮
ଆଖି ମୋତେ ପଛକୁ ଦେଖାଇଲା ସପନ
ଭଗବାନଙ୍କ ଆଖିର ପତାରେ ଘଟାଏ କୋଟିଏ ଯୁଗର ସପନ ୪୯
ତମେତ ଆସିଲ ନାହିଁ ବସନ୍ତକୁ କିଆଁ ପଠାଇଲ ।



# ଗୀତି ଗୁଚ୍ଛ

## ଆଧୁନିକ

ଜହ୍ନର ଦେଇଛୁ ଶତ କୁନି କୁନି ଜୋଛନା ହାତରେ,
ସେ ଶତ ଲୁଚୁଛି ପଡ଼େ କଇଁଫୁଲ ଲାଜୁକୀ ଆଖିରେ ।୦।
ଗତ ସାରା ରତ୍ନବସେ ଜାଳି ଏଇ ଆକାଶୀ ଉଆସେ,
କେତେ ଯେ ଖିଆଲି ସ୍ୱପ୍ନ ମାଳ ମାଳ ଆଖି ତଳେ ଗଢେ,
ଶିଶିର ଶେଯରେ ଶୋଇ ଚୁନି ଚୁନି ସାମୁକା ନଦରେ । ୧
ମଝିରେ ମଝିରେ ଏଇ ଚକୋରୀଟା ଅଭିଶାପ ଢାଳି,
ଆମ ଅଭିସାର ପଥ ଫୁଲ ସବୁ ପକାଇ ଝାଉଁଳି,
କାଲିର ପୂନମ ଗଣ୍ଡ ପୂଆଣିଠ ପିବନ ଝଫଲେ । ୨ ।



## ଆଧୁନିକ

ପୁଷ୍ପିତା ଗୋ! ପୁଷ୍ପରେଣୁ ସୁରଭିତ ମନ୍ଦୀର
ଗୁଣୁ ଗୁଣୁ ଗୁଂଜରଣେ କୁଞ୍ଜ ଝାଳ ଅଧର । ୦ ।
ମୋ ମନର କଳ୍ପଲତା କୋଳେ ତୁମେ କୁସୁମ,
ମୋ ଆଖିର ନଳୀମାରେ ତୁମେ ମଧୁ ସପନ,
ମୋ ବୀଣାର ଅଳାପରେ ତୁମେ ସୁର ଝଙ୍କାର । ୧ ।
ମୋ ହୃଦର ଶେଫାଳି ଗୋ ମୋ ଆଶାର ସଳତା,
ମୋ ବିରହେ କଳିକା ଗୋ ଅଭିସାରେ ସରିତା,
ରୂପହାସୀ ମୁଁ ଗୋ ତୁମେ ମୋର ରୂପ ହନ୍ସାର । ୨ ।

## ଆଧୁନିକ

ନଷ୍ଟ ଚନ୍ଦ୍ରରେ ପୂର୍ଣ୍ଣତିଥି ଆସନା,
ନଷ୍ଟ ଖାଞ୍ଚରେ ପକ୍ଷୀ ସୁଖ ରହନା । ୦ ।

ରିକ୍ତ ମନରେ ସୁପ୍ତ ଆଶା ଜାଗନା,
କ୍ଲାନ୍ତ ପାଦରେ ଦ୍ରୁତ ଗତି ଆସନା,
ଦୀପ୍ତ ଶିଖାରେ ମୂର୍ଖ କୀଟ ଭୁଲନା । ୧ ।

ଶ୍ୱେତ ପଦ୍ମରେ କୃଷ୍ଣ ଅଳି ପାଅନା,
ରୁଦ୍ର ପ୍ରାନ୍ତରେ ଶାନ୍ତ ଶ୍ୟାମା ଉଠନା,
ନଷ୍ଟ ପୁଷ୍ପରେ ମିଷ୍ଟ ସୁରଭି ଝରନା । ୨ ।



## ଆଧୁନିକ

ଧରଣୀ ନୟନୁ ଟୋପିଏ ଲୁହ ଯେ ଝରଇ,
ପ୍ରଣୟର ତାହା କୋଟି ଇତିହାସ ଲେଖଇ । ୦ ।
ଧରଣୀ ବୁକୁରୁ ଏକ ନିଶ୍ୱାସ ଯେ ବହଇ,
ପ୍ରଣୟର ତାହା କୋଟି ଦାହ ହୋଇ ଛୁଟଇ । ୧ ।
ଧରଣୀ ଚିତ୍ତରେ ଏକ କାମନା ଯେ ଜାଗଇ,
ପ୍ରଣୟର ତାହା କୋଟି ଚିତାନିଆଁ ଜାଳଇ । ୨ ।



## ଆଧୁନିକ

ସୁର ଧୂନି ସ୍ରୋତେ କନକ ଚମ୍ପା ମୁଁ ଭାସିଯାଏ ଭାସିଯାଏ
ସୁନେଲି କିରଣ ରୂପଲି ଜୋଛନା ଛୁଇଁଯାଏ ଛୁଇଁଯାଏ ।୦।
ମୋର ଏ ତନୁର ପରଶ ପାଇବ ବସୁନ୍ଧରା ରୂପକନ୍ୟା
ତା' ପ୍ରଣୟୀ ପାଇଁ କବରୀରେ ସାଜି ନିଜରେ କରିବ ଧନ୍ୟା
ସନ୍ତାନ ପିଆସୀ ପୂଜାରିଣୀ ବଧୂ ଶିବାଳୟେ ଯେତେ ଯାଏ ।୧।
ଶାନ୍ତା, କଲ୍ୟାଣୀ କେଉଁ ସନ୍ନ୍ୟାସିନୀ ପାଇଁ ମୁଁ ଆଶିଷ ପୁଷ୍ପ
ପ୍ରିୟ ବରଷର ବନ୍ଧୁଦାନ୍ତ ପରେ ନୂତନ ପ୍ରଣୟ ଧୂପ,
ଚିରନ୍ତନୀ ମୁଁ ଗୋପଷ୍ଟାର ଇଙ୍ଗିତେ ଦେବାଶୀଷ ଡାକିଯାଏ ।



## ଆଧୁନିକ

ନନ୍ଦନ କାନନ ପାରିଜାତ ତୁମେ ମୁଁ ମାଟିର ଘାସ ଫୁଲ
ତୁମ ସୁରଭିର ମଧୁର ନିଶାରେ ମୁଁ କାହିଁ ହୋଇବି ଭୁଲ ।୦।
ବୁକୁରେ ତୁମର ବିପୁଳ ବିଭବ ରୂପ ଗନ୍ଧର ଧନ,
ଦେବ ଅଭିସାରେ ନର୍ତ୍ତକୀ ଉର୍ବଶୀ କବରୀ ଦେଇଛି ଭରି,
ମଉଳା ରୂପେ ମୁଁ ହୋଇପାରିଲିନି ଗୋଟିଏ ପୂଜାର ଫୁଲ
ଲାସ୍ୟମୟୀ ତୁମ ଜୀବନ ବାସରେ ଜଳ ଜଳ ନୀଳସ୍ୱପ୍ନ
ପିରତିର ପୂଜା ଉପଚାରରେ ଆଣେ ଘୁମନ୍ତ ମଧୁ ଲଗ୍ନ,
ପ୍ରଣୟ ପୁଲକ ମୋଜାବନେ କାନ୍ଦେ ମୁଁ ଯେ ଏକ ଝଙ୍ଗଫୁଲ । ୨ ।



## ଆଧୁନିକ

ତୁମେ ଖାଲି ଟିକେ ହସ
ସେଇ ହସ ସଖି ଜୀବନେ ଆଣୁଚେମା ବସନ୍ତର ମଧୁ ମାସ ।୦।
ତୁମର ମୁକୁଳା କବରୀ ସାଜରେ
ତୁମର ଚପଳ ଚପଳ ଛନ୍ଦରେ
ଝର ଝର ଯାଉ ମନରେ ମାଙ୍କ ମଧୁର ବାସର ରସ । ୧ ।
କଳ୍ପଲତା ତୁମେ ମୋ ମନ କୁଂଜରେ
ଅଭିସାରିକା ଗୋ ପ୍ରିତି ପଥଧାରେ
ଜାଳି ଜାଳି ଦିଅ ଆଶା ଦୀପାବଳୀ ସେଇ ମୋ ପ୍ରାଣପୁ ଉଦ୍ଧ ।୨



## ଆଧୁନିକ

ଜହ୍ନକୁ ମୁଁ ନିତ ନିତ ଦେଖୁଛି ଦେଖୁଛି
ଏବେ ଥରେ ଦେଖା ତୁମ ମୁଖ ଚନ୍ଦ୍ର ମୁଖି
ଅନେକ ମୁଁ ପିଇଲଣି ଜୋଛନାର ସୁଧା
କଇଁ ବଣେ ବୁଲି ବୁଲି ହେଲିଣି ବାଉଳା
ଶିର ଶିର ପବନରେ ମୋ ମନ କାଉଳା
ପଥର ହୋଇଲା ତୁମ ଫୁଲ ସମ ଚିତ୍ତ ।୧।
ଫୁଟିଲା ରଜନୀ ଗଂଧା ଯାଗିଲା କାମିନୀ
ନଦୀ ଧାରେ ପ୍ରିତି ବନ୍ଧେ ଚକଡା ହରିଣୀ
ଏବେ ତୁମ ଅଖି ଖୋଲ ଚମ୍ପକ ବରଣୀ
ରାତି ହିତ ଜାଗି ଜାଗି ଝୁରେ ମୋର ଆଖି । ୨ ।



## ଆଧୁନିକ

ତୁମରି ଦେହର ରୂପ ଅରଣ୍ୟରେ
ଉଠିଛି ଗୋ ଆଜି ରକ୍ତର ପଳାସ ଝଡ଼
ଚକ୍ଷୁର ସ୍ୱଇର ଅଳସ ଅନ୍ଧାରେ
ଝରିତ ପଡ଼ୁଛି ଇସରର ଜହ୍ନି ଫୁଲ । ୦ ।
କଟିରେ ତୁମର ମେଘମାଳାମ୍ବରୀ
ଅଧରେ ତୁମରି ଚମକେ ବିଜୁଳି
ପଲକ ବୁଜିଲେ ଶେଷ ସୂର୍ଯ୍ୟର
ଅସ୍ତରାଗ କିଛି ଲେଖିଯାଏ ବିଧୁର । ୨ ।
କଣ୍ଠରେ ତୁମର ସଂଗୀତ ସୁରଭି
ତୁମାରି ମାନସେ କାମନା କରବୀ
ଦେହ ଆଜି ମନ ଫଳକ ଉପରେ
ଚିତ୍ରିତ ଆଙ୍କେ ଯଉବନ ଚମତ୍କାର । ୨ ।

—*—

## ଆଧୁନିକ

ମୋର ଏ ଆଖିରେ ସାଇତିଛି ତୁମ ସପନ,
ମୋର ଏ ବୁକୁରେ ଯଗାଇଛି ତୁମ କମ୍ପନ । ୦ ।
ଶରିଲି ଓଠେ ମୋ ଗାଇଛି ତୁମରି କବିତା
ଝରିଲି ଲୁହରେ ତୁମରି ଚେଫାଳି ସାଇତା
ହସିଲି ରୂପେ ମୋ ତୁମରି ମନର ଫଗୁଣ । ୧ ।
ଚକ୍ଷୁର ସ୍ୱଇରେ ଘେନେଇ ଆସେ ଗୋ ରଜନୀ
ଭୁଲି ଚଳାଇ ମୁଁ ଫୁଟାଏ କାମନା କାମିନୀ
ନୟନ ନାୟିକା ମୁଁ ଲଭିବ ସାଗର ସଂଗମ । ୨

## ଆଧୁନିକ

ତୁମେ ହେବ ଯଦି ଏକ ନବାରୁଣ ପାହାନ୍ତ
ତୁମ ବୃନ୍ତୁ ପର ମୁଁ ଗୋ ସେନେହର ଝରଣା
ତୁମେ ପୁଣି ହୁଅ ଯଦି ଘନ ଘୋର ଅନ୍ଧାର
ତୁମରି କୋଳରେ ମୁଁ ଗୋ ଢାଳି ଦିବ ଜୋଛନା । ୦ ।
ତୁମରି ପଥର ଦେହେ ମୁଁ ଟିକେ ଶିଉଳି
ତୁମରି ଧୂଳିର ଶେଯେ ମୁଁ ହେବ ଶେଫାଳି
ତୁମେ ଯଦି ହେବ ଏକ ଧୂସରିତ ଦିଗନ୍ତ
ତୁମ କୋଳେ ମାଖିବିମୁଁ ଉଦୟାସ୍ତ ରଂଗିମା । ୧ ।
ତୁମରି କଂଟକ ଶଯ୍ୟେମୁଁ ଟିକେ ସୁରଭି
ତୁମ ବେସୁରା ବୀଣାରେ ତୋଳିବ ପୂରବୀ
ତୁମେ ଯଦି ହୁଅ ଏକ ବିଗତର ବସନ୍ତ
ତୁମ ଝରାପତ୍ରେ ମୁଁ ଗୋ ବୋଳିଦେବ ମାଳମା । ୨ ।



## ଆଧୁନିକ

ବସନ୍ତ ଲେଖିଛି ଚିଠି ଗୋଲାପି ଗୋଲାପି
ଫୁଲ ଲଫାପାରେ ଭରି ପାଖୁଡ଼ା କେତୋଟି । ୦ ।
ମଳୟ ଯାଇଛି ଆଜି ତାର ଡାକବାଲା
କୋଇଲି ସୁରରେ ଡାକେ ଚିଠି ନିଅଭଲା
ଗୋପନ ଚିଠାଉ ଉଠେ ମହକ ମହକ । ୧ ।
ଚିଠିରୁ ଜାଣିଲୁ ଧାଡ଼ି 'ପ୍ରିୟତମା' ମୋର
ଚିଠି ଲୁହେଁ ତମ ପାଇଁ ପ୍ରୀତି ଉପହାର
ଅସରନ୍ତି କଥା ଏଣୁ ଲେଖୁନି ମୁଁ ଇତି ।

## ଆଧୁନିକା

ତୁମେ ମୋର କଳାର କଳପନା ଉଦାସୀ
ତୁମେ ମୋର ମନର ମାନମୟୀ ମାନସୀ
ତୁମେ ମୋତେ ଶିଖାଇଲ ଜୀବନଟା ସପନ
ତୁମେ ପୁଣି ଶିଖାଇଲ ଜୀବନଟା ରଙ୍ଗୀନ
ଫଗୁଣେ ଫଗୁଣେ ମତେ କଲ ମଧୁ ପିଆସି । ୧ ।
ତୁମେ ମୋତେ ଦେଖାଇଲ ମରୁ ନୃତ୍ୟେ ନର୍ତ୍ତର
ତୁମେ ପୁଣି ଶିଖାଇଲ ଖାଲି ସୁର, ଝଙ୍କାର
ରୂପ,ରଙ୍ଗ,ରସ,ଗନ୍ଧ ବୁକେ ଦେଲ ପରଶି । ୨ ।

—*—

## ଆଧୁନିକା

ତୁମେ ପ୍ରଥମ ପ୍ରଣୟର ପ୍ରେମିକା
ତୁମେ ପ୍ରଥମ ବସନ୍ତର କଳିକା । ୦ ।
ନବସାଜେ ତୁମେ ଆଦ୍ୟ ଆଷାଢ଼ ରଙ୍ଗ
ଚରଣରେ ତୁମ ଏଦ୍ୟ ମୁଖର ଛନ୍ଦ
ଆଖିରେ ଗୋ ତୁମ ପ୍ରଥମ କସ୍ତୁରିକା । ୧ ।
ମନତଳେ ତୁମ ଆଦ୍ୟ ବାସର ଦୀପ
ଅଭିସାରେ ତୁମ ସଦ୍ୟ ପୂଜାର ଧୂପ
ସୃଷ୍ଟିର ଗୋ ତୁମ ପ୍ରଥମ ଇଙ୍ଗିତିକା । ୨

—*—

## ଆଧୁନିକ

ପ୍ରିୟା ମୋ ଲାଜେଇ ଗଲା ଓଠେ ବୋଲ ଫଗୁଣ
ବସନ୍ତ ମୁକୁଳା କଲା ଡାକ ଆଣି ଶ୍ରାବଣ । ० ।
ପ୍ରିୟା ମୋ କହିଲେ କଥା ଝରିଯାଏ କବିତା
ପ୍ରିୟାର ନୟନେ ଦେଖେ ସପନର ନାୟିକା
ମୋ ପ୍ରିୟା ନିଶ୍ୱାସେ ମୁଁ ଯେ ସୁରଭିରେ ମଗନ । ୧ ।
ମୋ ପ୍ରିୟା ହସରେ ଜାଣେ ମିଳନର ମଧୁର
ମୋ ପ୍ରିୟା ଲୁହରେ ବୁଝେ ବିରହର ଆତୁର
ପ୍ରଣୟ ମାଦକ ଆଣେ ମୋ ପ୍ରିୟାର ଗୁମାନ । ୨ ।



## ଆଧୁନିକ

ଯଉବନ ଏକ ଲତା    ଲାଜ ତାର ଏକ କଳି
ସ୍ୱପ୍ନ ସୁରା ତାର ମଧୁ    ଲୁଚି ଯାଏ ମନ ଅଳି । ० ।
ବେପଥୁ ମଳୟ ତାର    ଉଡାଏ ତୋ ଫୁଲ ରେଣୁ
ଅନୁରାଗ କାକ ଜୋସ୍ନା    ଶିହରଏ ତାର ତନୁ
ମିଳନ କୋଇଲି ଗାଏ    ପିରତି ପିୟୂଷ ଭରି । ୧ ।
ଅଭିସାର ତା' ଅତିଥି    ବାସର ତା' କୁଞ୍ଜ ବନ
ପ୍ରବାଳ ତା'ଓଠ ହସ    ଇନ୍ଦ୍ରଜାଲ ତା'ର ସ୍ୱପ୍ନ
ଜୀବନ ତା' ଚନ୍ଦ୍ରଶାଳା    କଟାକ୍ଷ ତା' ରଙ୍ଗତୁଳି । ୨ ।



## ଆଧୁନିକ

ମେଘଦୂତ ଶୁଣୁନିକ ମେଘଦୂତ ଗୀତ,
ବିରହୀ ଯକ୍ଷର ଅବା ଆକୁଳ ମିନତି । ୦ ।
ଦେଖିନିକ କେଉଁ ପ୍ରିୟା ପ୍ରାଣପ୍ରିୟ ଲାଗି
ବଣମଲ୍ଲୀକାର ମାଳ ରଖିଅଛି ସାଜି
କଏ ପୁଣି ସାଜିଛି ତା ଗଭାରେ କେତକୀ । ୧ ।
ବାସରେ ଶେଯରେ ବୁଣି କଦମ୍ବର ରେଣୁ
ମିଳନ ପିଆସି ନବ ପ୍ରଣୟୀ ମନୁ
ପ୍ରଣୟ ଚଟାଉ ଲେଖେ ଅନୁରାଗ ମାଗି । ୨ ।

—✳—

## ଆଧୁନିକ

କାଲିର ସପନ ତୁମେ ଆଜ କି ଗୋ ଆସିବ,
ସାଥିରେ ତୁମର ସେଇ କଂପନ ଆଣିବ
କାଲିର ଜୋଛନା ତୁମେ ଆଜ କି ଗୋ ଝରିବ
କାଲିର ସୁରଭି ତୁମେ ଆଜ କି ଗୋ ଢାଳିବ
ମୁଁ ଭାବୁଛି ସେଇ କାଲି ପୁଣି ଆଜି ଆସିବ । ୧ ।
କାଲିର ବାଣୀ ଗୋ ତୁମେ ହୁଅ ନାହିଁ ନୀରବ
କାଲିର ଶିଖା ଗୋ ତୁମେ ଆଜ ବତି ଜଳାବ
ମୁଁ ଭାବୁଛି ସେଇ କାଲି ପୁଣି କାଲି ଆସିବ । ୨ ।

୨ ❋❋

## ଆଧୁନିକ

ଫୋଛ ସୁରଭି ଝଡ଼ରେ ସ୍ପେ କି ଆସେନା
କେବେ କି ଅବୁଝା ମନ ବୁଝି ପାରେନା । ୦ ।
ବାଉଳା ବାଦଲ ଭାସେ ନୀଳ ଆକାଶେ
ଉଛୁଳା ବତାସ ଢେଉ ଢୋଳେ ଆବେଶେ
ମୋ ମନେ ତରଙ୍ଗ କିଆଁ ଦିଏ ଭାବନା । ୧ ।
ଝରି ଝର ବରଷା ଯେ ଝରଇ ଧୀରେ
ଫୁଲ କି ଯଗାଇ ଦିଏ କାନନ କୋଳେ
ମୋ ମନେ ଚମକ କିଆଁ ଦିଏ ଭାବନ । ୨ ।



## ଆଧୁନିକ

ଏ ଆଖିରେ ଯେତେବେଳେ ଝୁରି ଯାଏ ସପନ
ଏ ଚିତ୍ତରେ ଯେତେବେଳେ ପୁଶଯାଏ କଂପନ । ୦ ।
ଏ ଦେହରେ ଯେତେବେଳେ ଯାଦୁକରୀ ଯୌବନ
ଯେତେବେଳେ ସବୁଖାଲି ରଙ୍ଗଭରା ଫଗୁଣ
ଓଠ ଖାଲି ଯେତେବେଳେ ମଧୁ ବୋଲେ ଲବଣ । ୧ ।
ଏମନର ଯେତେବେଳେ ମଧୁ ଚନ୍ଦ୍ର ଲଗନ
ଅନଳବି ଯେତେବେଳେ ସୁବାସିତ ଚନ୍ଦନ
ଲୁଅଁସ ଜୋଛନା ହୁଏ କଂଟକିତ କୁସୁମ । ୨ ।



## ଆଧୁନିକ

ଆଖିରେ ଆଲୁଅ ଅଛି ଅଛି ପୁଣି ଅନ୍ଧାର
ଆଖିରେ ଝରଇ ଲୁହ ପୁଣି ହସ ଜୁଆର ।
ଆଖିରେ ଶରଦ ଅଛି ଅଛି ପୁଣି ମିଳନ
ଆଖିରେ ଶ୍ରାବଣ ଝରେ ହସେ ପୁଣି ଫଗୁଣ
ଆଖିର ଅମୃତ ଢାଳେ ପୁଣି ବୋଲେ ଜହର ।୧।
ଆଖିର ପ୍ରଣୟ ଯେତେ ସେତେ ପୁଣି ଗୁମାନ
ଯେତିକ କାମନା ଫଲ୍ଗୁ ସେତେ ପୁଣି ବନ୍ଧନ
ଏ ଆଖି ଯେତିକି ମୂକ ସେତେ ପୁଣି ମୁଖର ।୨।



## ଆଧୁନିକ

ଢଳ୍ମଳ୍ ଢଳ୍ମଳ୍ ଆଖି ନେଞ୍ଜିବ ଝୁଛି
ରୋମେ ରୋମେ ମୋ ଦେହରେ ଅରଦଳ ଜଳୁଛି ।୦।
ହସିଲ୍ ହସିଲ୍ ଓଠେ ସେଇ ହସ ଟିକକ
ଦେଖିବାକୁ ପଡେ ନାହିଁ ଆଖିରେ ମୋ ପଲକ
ସେଇ ହସ ରୋମେ ରୋମେ ପୁଲକ ମୋ ଭରୁଛି ।୧।
ଝରଣ ଝରଣ ଆଖି ସେଇ ଲୁହ ଟିକକ
ଭରିଦିଏ ମୋ ଛାତିରେ ଗୁରୁ ବ୍ୟଥା ଅନେକ ।
ସେଇ ଲୁହ ରୋମେ ରୋମେ ନିଆଁ ଖାଲି ଜାଳୁଛି ।୨।



## ଆଧୁନିକ

କୁନି କୁନି ପାପୁଲିରେ ଚୂନା ଚୂନା ସାମୁକା ଗୋଟାଇ
ଥୋଇ ଥୋଇ ନାଚୁଥିଲୁ ଢେଉ ସାଥେ ଖେଳିଲେ ହୋଇ ବାଇ । ● ।
ଆଜି ସେ ପାପୁଲି ତୁମ ପ୍ରଜାପତି ରଙ୍ଗ ବେରଙ୍ଗର
ଫୁଲ ସବୁ ତୋଳି ତୋଳି କା'ର ପାଇଁ କର ଗଳାହାର
ଆଖିର ଭଅଁରଣ୍ଡ ଉଙ୍କେ ମନ ସ୍ନେହ ଗୀତ ଗାଇ ଗାଇ । ୧ ।
ଢେଉ ସିନା ଗଣୁଥିଲ ଆଜି ତୁମ ଦେହରେ ଜୁଆର
ଧୂଳି ସିନା ଖେଳୁଥିଲ ଆଜି ତୁମ ମଧୁର ବାସର
ଫୁଲ ସବୁ ଫୁଟିଲେଣି ତୁମ ଓଠୁ ମଦକ ସ୍ନେହେଇ । ୨ ।



## ଆଧୁନିକ

ଫୁଲ ତୁମେ ପଠାଇଲ ଫଗୁଣ ହାତରେ
ସେ ଫୁଲ ପିନ୍ଧିବ ମୋର ମାଳତୀ ଗଭାରେ
କାନନ କୁମାରୀ ମୁଁ ଗୋ ହରିଣୀ ଚଂଚଳ
ଝରଣା ଉଡ଼ାଏ ମୋର କାମିନୀ ଅଂଚଳ
ତୁମ ରଂଗ ଅଙ୍ଗରାଗ ମାଖେ ମୁଁ ଅଙ୍ଗରେ । ୧ ।
ତମାଳ ଆଖିରେ ମୁଁ ତ ତୁମକୁ ଚାହିଁଛି
ପଲାସ ଓଠରେ ତୁମ ପାଇଁ ମୁଁ ହସୁଛି
ତୁମର ଗୀତ ମୁଁ ଗାଏ କୋଇଲି କୁହୁରେ । ୨ ।



## ଆଧୁନିକ

ଶଙ୍ଖ ଦ୍ୱୀପର ମତ୍ସ୍ୟ କନ୍ୟା ଗୋ ପଦ୍ମଗଂଧା ସ୍ୱପ୍ନ ମାନସୀ
ପ୍ରବାଳ ଓଠର ଶୁଭ୍ର ଚନ୍ଦ୍ରହାସ୍ୟ ମଧୁଛଂଦା ସୁର ସାଜେସୀ । ୦
ତୁମେ ଖାଲି ଯାଣ ମୟୂର ପକ୍ଷୀର କବରୀ କରିବା ମୁକୁଳା
ସଧା ତମାଳର କୋମଳ କେଶରଭୂରୁ ନେତ୍ରାଳ ହେବା ଉତଳା
ଜଳ ତରଙ୍ଗର କଂକଣ ସୁରରେ ମାନସେ କରିବ ଉଦାସୀ । ୧ ।
ତୁମେଙ୍କ ଯାଣନା ଏ ଶଙ୍ଖ ଦ୍ୱୀପର ପଦ୍ମପୁର ହେବ କନ୍ଦର
ମରୁଭୂମୀ ହେବ କାଳ ବଇଶାଖି ଦାହ ତାର ହେବ କରାଳ
ତୁମ ମାଳ ବାଟ ଉଆସ ଭାଙ୍ଗିବ ସଂଗର୍କା ହେବ ତାପସୀ । ୨ ।



## ଆଧୁନିକ

ଶିଳାର ସପନ ଦେଖେ ଫୁଲର ମନରେ
କାଳିମା ଝଡରେ କଅବା ପୂନେଇଁ ଜହ୍ନରେ । ୦ ।
ମରୁଦେହେ ତୋଳି ତୁମେ ସାଗରିକା ତେଜ
କଂଟକରେ ଭରିଥିଲ ଫଗୁଣର ମହୁ
ଆଜି ସେ ମଳୟ ହଜେ ଶ୍ରାବଣ ଝଡରେ । ୧ ।
ଜହ୍ନର ଓଠରେ ଯେବେ ସୁଧା ଥିଲ ବୋଳି
ଭଗ୍ନ ବୀଣାରେ ତୁମେ ସୁର ଥିଲ ଭରି
ଆଜି ସେ ଡାକଇ କୁହୁ ହଜିଛି କଥରେ । ୨ ।



## ଆଧୁନିକ

ଭ୍ରମରତ ଏଇ ମାସ    କେତୋଟି ବସନ୍ତ
ମନ୍ଥର ଝୁରେଇ ଦେହେ    ପ୍ରଜାପତି ଚଳ । ୦ ।
ଆଖିରେ ଭଅଁର ଭ୍ରମ    ମେଘ ଛଳ ଛଳ
ଓଠରେ ଗୋଲାପ ଚୁମ    ସୁରା ଢଳ ଢଳ
ସୁନାର ପଦୁଅଁ ପାଦ    ମାଣିକର ନଖ । ୧ ।
ଦେଖି ଦେଖି କୁଟୁ କୁଟୁ    କପୋଛି ପ୍ରଣୟ
ଥଇ ଥଇ ଥରେ ଚୁମ    କେତକୀର ଦେହ
ଛର କୁମାରୀ ରଙ୍ଗବ    ଅନେକ ବସନ୍ତ । ୨ ।



## ଆଧୁନିକ

ଆଖି ଆଖି ଆମ ଯେବେ ହୋଇଯାଏ ମିଳନ
ଆଖି ସ୍ୱରଣପଟେ ଆମ ଦେଖିଯାଏ ସପନ । ୦ ।
ଓଠ ଓଠ ଆମ ଯେବେ ମିଳନର ଅଧର
ଓଠ ଗ୍ରହପଟେ ଉଡ଼େ ଫଗୁଣର ଅମ୍ବର
ଆମରି ସୁରଭି ନେଇ ଫୁଟେ କେତେ କୁସୁମ । ୧ ।
ମନ ସହ ମନ ଯେବେ ଆମେ ଦେଉଁ ମିଶାଇ
ମରୁ ବୁକେ କୁଳୁ କୁଳୁ ସ୍ୱର ଦେଉଁ ଝରାଇ
ପ୍ରକୃତି ପୁରୁଷ ରୂପେ ଆମେ ନେଉ ଜନମ । ୨ ।



## ଆଧୁନିକ

ତୁମକୁ ଭୁଲିବା ପାଇଁ     ଯେତେକ ମୁଁ କରୁଛି ସାଧନା
ଫଳମୁଁ ପାଉଛି ତାର     ତୁମ ପାଇଁ ସ୍ମରିବା ବେଦନା । ୦ ।
ବୟସ ମଦିର ପିଣା     ମଦିରିକ ମମତାର ଧାର
ରୂପ ପିଣା ଲଜ୍ଜିପିକ     ଲଭିବନି ପ୍ରଣୟର ଗାର
କୁତୁହଳ ଆଖିତକୁ     ତୁମଛବି ବାରେରବି ଲଭେନା । ୧ ।
ଯାଉଛି ଯା'ଗୁଲିତ'ହା     ଆଜକେତେବେ ପ.ଶେ ଫେରିବନି
ବନ୍ଧୁଗଲ୍ ନଈ ସୁଅ     ଆଉ କେବେ ଫେରି ଆସିବନି
ଅମାନିଆ ମନ ମୋର     ସବୁ ବୁଝି କରୁଛି ବୁଝେନା । ୨ ।



## ଆଧୁନିକ

ନୀଳ କାଗଜରେ ସେଇ କେତୋଟି ଅକ୍ଷର
ମୋ ପାଇଁ ହେଲଣି ସଖି କାବ୍ୟ ଗ୍ରନ୍ଥାଗର । ୦ ।
ନୀଳ କାଗଜରେ ସେଇ ମଧୁ ସମ୍ବୋଧନ
ପ୍ରଣୟ ପିପାସୁ ମନେ ତୋଳୁଛି କମ୍ପନ
ବିଦଗ୍ଧ ହୃଦୟ ଖୋଲି ଥରେ ବାର ବାର । ୧ ।
ତୁମଠୁ ମୁଁ ଆଜି କିଛି କରୁନି ଗୋ ଆଶ
ସେଇ ଦୁଇ ଧାଡ଼ି ମୋର ପରାଣ ସର୍ବସ୍ୱ
ଆଶାର୍ତ୍ତୀ ଜୀବନେ ସେତ ଶ୍ରେଷ୍ଠ ଉପହାର । ୨ ।



## ଆଧୁନିକା

ଭଅଁର ଘରତ ସହେନା ବୁକେ
କମଳ କଣ୍ଟ କହେନା ମୁଖେ । ୦ ।
କୋମଳ ବଡ଼ କମଳ କଳି
ନିଠୁର ବଡ ଚପଳ ଅଳି
ତା' ବୁକୁ ମଧୁ ନିଠୁରେ ଶୋଷେ । ୧ ।
ସରଳା ବଡ ସୋହାଗୀ ରାଧା
ନିଠୁର ବଡ କଳା କହ୍ନେଇ
କାନନେ ଛପି ବଂଶୀରେ ଡାକେ । ୨ ।



## ଆଧୁନିକ

ଓଠରୁ ଝରେ ମୋ ମଧୁ ଝରେ ପୁଣି ବିଷ
ଆଖିର ଲୁହରେ ଝରେ କାନ୍ଦ ଆଉ ହସ
ପ୍ରାଣରୁ ମୋ ଉଭ ନଈ ବିରହ ମିଳନ
ଜୀବନ ମୋ ଗଢା ହେଇ ସତ୍ୟ ଓ ସ୍ୱପନ
ଚଲାପଥ ଆରମ୍ଭ ମୋ କେବେ ପୁଣି ଶେଷ । ୧ ।
କଥାରେ ମୋ ସାଥେ ସାଥେ ଗପ ଓ କଳ୍ପନା
ମନରେ ମୋ ପାଖେ ପାଖେ ଫୁଲ ଆଉ କଣ୍ଟା । ୨ ।
ମଳୟ କେବେତ ପୁଣି ଝଡ ମୋ ନିଶ୍ୱାସ । ୨ ।



## ଆଧୁନିକା

ବସନ୍ତର ନବୀନ ପରଶ
ଦେହେ ଦେହେ ମନେ ମନେ ଜଗାଏ ପୁଲକ । ୦ ।
ମନର ମାନସୀ ପାଇଁ ଭାବନା ଅପାର
ଦେହରେ ବଢେଇ ଜ୍ୱାଳା ସତେତକ ଅନଳ
ପ୍ରିୟାର ଭାବନା ଆଣେ ମିଳନ ଆବେଶ । ୧ ।
ମନର ମାନସୀ ପାଇଁ ଯେତିକ ପ୍ରତୀକ୍ଷା
ଛଳରେ ଅତନୁ ଦିଏ ପ୍ରଣୟର ଦୀକ୍ଷା
ପ୍ରିୟାର ସପନେ ଦିଏ ଗଭୀର ଆଶ୍ଳେଷ । ୨ ।



## ଆଧୁନିକା

ତୁମ ଆମ ପରିଚୟ ମନ ବିନିମୟ
ସ୍ନେହ ଡୋରେ ବନ୍ଧାହେଲା ଦୁଇଟି ହୃଦୟ । ୦ ।
ଆମେ ହେଲେ ଫୁଲ ମଧୁ ଆମେ ପ୍ରଜାପତି
ଆମେତ ଆକାଶ ନୀଳ ଆମେ ନୀଳପକ୍ଷୀ
ଚଇତ ଗୋଧୂଳି ଆମେ ଫଗୁଣ ମଳୟ । ୧ ।
ଆମେତ ମନର ଶଠି ଆଖିର ଠିକଣା
ଯଉବନ ତେଜ ଆମ ଜୀବନ ଯମୁନା
ମଧୁ ଚନ୍ଦ୍ର ରାତି ଆମେ ଜୋଛନା ପ୍ରଣୟ । ୨ ।



## ଆଧୁନିକା

ତୁମେ ମୋର ନବ ହେଲ୍ ତୁମେ ହେଲ ସପନ
ତୁମେ ପୁଣି ହେଲ ବୁକୁ ତୁମେ ହେଲ୍ କମ୍ପନ । ୦ ।
ତୁମେ ହେଲ ଫୁଲ ମହୁ ତୁମ ପୁଣି ମହୁକ
ତୁମେ ହେଲ କେଳି ବଧୂ ତୁମେ କଳା କୁହୁକ
କେଳି କଳା କଳାବନ୍ତ କେଳିପୁର ମଣ୍ଡନ । ୧ ।
ତୁମେ ମୋର କୁଞ୍ଜବନ ତୁମେ ମୋର ଯମୁନା
ତୁମେ ମୋର ଅଂଧକାରେ ମୋର ସ୍ନେହ ନବୀନା
ମୋର ଆଖି ମୋର ଭ୍ରୁରୁ ମୋର ମୋର କଂପନ । ୨ ।



## ଆଧୁନିକା

ଓଠ ଫୁଲେ ଝୁଲାଇଲ ହସର ବାସନା
ଆଖିର ଭଅଁର ଏଣେ ହେଲା ଆନ ମନା । ୦ ।
ଦେହରି ବେଢ଼ାରେ ଏଣେ ରୂପର କଳସ
ବୟସର ଆମ୍ବ ଡାଳେ ବଉଳ ଅପୂସ
ଯଉବନ ଖେଳଘାଟେ ମନର କୁଣିଆଁ । ୧ ।
ପ୍ରଜାପତି ପାପୁଲିରେ ଚଂପା କଢ଼ୀ ତୋଳି
ଫୁଲ ଘର ତୋଳି ଦେଲ ପ୍ରିୟ ରଙ୍ଗ ବୋଳି
କାଲିର ମାନସୀ ତୁମେ ଆଜ କା'ର ପ୍ରିୟା । ୨ ।



## ଆଧୁନିକ

ଫୁଲ ପରି କଥା ନିମ ନରମ ନରମ
ସରମ ଚାହାଁଣି ଜାଳେ ମରମ ମରମ । ୦ ।
ଆଖିକୁ ଚାହିଁଲେ ଖାଲି ସପନ ସପନ
ବୁକୁରେ ସତେକି ଖାଲି କଂପନ କଂପନ
ଓଠରୁ ଝରେକି ମିଠା ଫଗୁଣ ଫଗୁଣ । ୧ ।
ଫେନେଲ ମତ୍ତ ଫେଣାରେ ମହମ ମହମ
ଲୁହର ଦରିଆ ଖାଲି ଲବଣ ଲବଣ
ମନ ଖୋଜେ ସେଇ ପ୍ରିତି ଲଗନ ଲଗନ । ୨ ।

—*—

## ଆଧୁନିକ

ମୋତେ ତମ ବଗିଚାରେ ବୁଲିବାକୁ କୁହନ୍ତ
ଫୁଲଙ୍କ ଟାହ୍ନି ଟାପର ମୁହଁ ଛୁଇଁ ପାରେନା । ୦ ।
ମୋ ଓଠକୁ ଦେଖି ତମ ଗୋଲାପଟା ହସୁଛି
ଡଂଟାରେ ମୋ ପଣତକୁ ଭିଡ଼ ଭିଡ଼ ନେଉଛି
ଦୋହଲି ଦୋହଲି ମୋତେ ବୁଲିବାକୁ ଦେଉନି । ୧ ।
ସଗାଟରେ ଜବସା ମୋ କଳି ଯବ ମୁକୁଳା
ଏବନଟା ଲୁଚି ଲୁଚି ଚଟାଲମି କରିଲା
ଖୋସାରେ ମୋ ଫୁଲଟିଏ ଖୋସିବାକୁ ଦେଉନି । ୨ ।

❊❊

## ଆଧୁନିକ

ହେ, ପ୍ରେମ ବିଦାୟ ... ...

ଜାଳନା ଜାଳଣା ଆଉ ଏ ମୋର ହୃଦୟ । ୦ ।
ମୋ ଆଖିର ଲୁହ ହେଉ ସାଗର ନୀଳିମ
ମୋ ଓଠରୁ ରଙ୍ଗ ନେଇ ହସୁ ଏ ଫଗୁଣ
ମୋ ଦେହ ସୁରଭି ନେଇ ବହୁ ଏ ମଳୟ
ମୁଁ ଆଜ ନିରେଷ୍ଟ ତୁମେ ନହୁଅ ବିସ୍ମୟ । ୧ ।
ଚଳପଥ ସରିଆସେ ଲକ୍ଷ ମୋ ସିମୀତ
ଦୀପଶିଖା ଲିଭିଆସେ ଗୃହେନି ଆଲୋକ
ଗଡାଯାଏ ମୁଁ ମନେ ମୋର ଜଗାନା ପ୍ରଣୟ
ବସ୍ତୁତ ସାଗରେ ଗୃହେଁ ହେବାକୁ ବିଳୟ । ୨ ।



## ଆଧୁନିକ

ମୁଁ ଏକ ଅତି ନଗଣ୍ୟା ବସନ୍ତ କଳିକା
ଭିକ୍ଷୁ କନ୍ୟା ବାଧନ୍ତିତା ସରଳା ବାଳିକା । ୦ ।
ମାଧବୀ ଫଳରେ ତୁମ ମଧୁର ଲଗନେ
ହେ କବି, କରନା ମୋତେ ମାନସୀ ଅଙ୍ଗନେ
ପ୍ରଣୟ ବିଳାସୀ ଶିଳ୍ପୀ ରଙ୍ଗିନ ତୁଳିକା
ମୋତେ ଆଙ୍କି କରନା ଗୋ କଳ୍ପନ ନାୟୀକା । ୧ ।
ମୀଳ ଶୂନ୍ୟ ନଥରର ନିଷ୍ଠୁର ବଳୟେ
ଭାବୁକ କରନା ପ୍ରିୟା ତୁମର ହୃଦୟେ
ଉଦାସୀ କେ' ବଂଶୀରୁ ଗୋ ଝରଇ ଗୀତିକା
ଡାକନା ନିକୁଞ୍ଜେ ମୋତେ ମୁଁ ଲୁଚେଁ ରାଧିକା । ୨ ।

## ଆଧୁନିକ

ମୁଁ ଯେ ଏକ ପୁଷ୍ପିତ ବସନ୍ତ ତଳକା
ରଞ୍ଜୁ କନ୍ୟା ରକ୍ତ ଯବା ଓଠେ ହସ ରେଖା । ● ।
ଚନ୍ଦ୍ରାଳସ କେଉଁ ଏକ ଧୂମନ୍ତ ଲଗନେ
କବିର ମାନସୀ ସାଜେ ତା' କାବ୍ୟ ଅଙ୍ଗନେ
ପ୍ରଣୟ ବିଳାସୀ କେଉଁ ଶିଳ୍ପୀର ତୁଳିକା
ମୋତେ ଆଙ୍କି କରେ ତାର କଳ୍ପନା ନାୟିକା
ନୀଳ ଶୂନ୍ୟ ମନ୍ଥରର ନକ୍ଷତ୍ର ବଳୟେ
କେଉଁ ଭାବୁକର ପ୍ରିୟା ହେଲି ତା' ହୃଦୟେ
ଉଦାସୀ ବଂଶୀରୁ ତା' ଝରଇ ଗୀତିକା
ତା' ସୁରର କୁଞ୍ଜବନେ ହେଲି ରାଧିକା । ୨ ।



## ଆଧୁନିକ

ତମ ମନ-ଗୀତ ଖାତା ପଢ଼ିବାକୁ ଦେଲନି
ମନ-ବଗିଚାରୁ ତମ ଫୁଲ ଟିଏ ଦେଲନି । ● ।
ମୋ ଜୀବନ-ଖାତା ତୁମେ ଚୋରି କରି ପଢ଼ିଲ
ତାକୁ ପୁଣି ସୁର ଦେଇ ଗୀତ ତମେ ଲେଖିଲ
ମୋତେ କିନ୍ତୁ ଗୀତଟିଏ ଗାଇବାକୁ ଦେଲନି । ୧ ।
ମୋ ହାତ ଲଗାଗଛ ଫୁଲ ସବୁ ତୋଳିଲ
ତାକୁ ଗୁନ୍ଥି ଫୁଲ ଦାନ ପରେ ନେଇ ଥୋଇଲ
ତାକୁ କରି ଫୁଲ ତୋଡ଼ା ଆଉ କା'ରେ ଭେଟିଲ
ମୋତେ କିନ୍ତୁ ଫୁଲଟିଏ ଦେଖିବାକୁ ଦେଲନି । ୨ ।

## ଆଧୁନିକ

ତୁମ ଗୀତ ଶିଖାରେ ମୁଁ ଆଲୋକ ନ ହେଲି ପଛେ
ଗୁଣ ଟିକେ କର
ତୁମ ଫଗୁଣ ଫୁଲରେ ସୁରଭି ନ ହେଲି ପଛେ
ଝଙ୍କାରଟି କର । ୦ ।
ତୁମର ବୀଣାରେ ମୁଁ ଗୋ ଚାହିଁଥିଲି ହେବାକୁ ଆଳାପ
ତୁମର ଓଠରେ ମୁଁ ଗୋ ଚାହିଁଥିଲି ହସର ଗୋଲାପ
ତୁମର ଆଖିରେ ଅବା ନ ହେଲି ସପନ ମାଳ
ଲୁହ ଟୋପେ କର । ୧ ।
ତୁମର ମନରେ ମୁଁ ଗୋ ଚାହିଁଥିଲି ବୋଳିବାକୁ ରଙ୍ଗ
ତୁମର ଗୀତରେ ମୁଁ ଗୋ ଚାହିଁଥିଲି ତୋଳିବାକୁ ଛନ୍ଦ
ତୁମର ବୁକୁରେ ଅବା ନ ହେଲି ପ୍ରଣୟ ତେଜ
କୋହ ଟିକେ କର । ୨ ।

—●—

## ଆଧୁନିକ

ନକ୍ଷତ୍ର ମୋ ଏ ଆଖିରେ ଏତେ ତମ ସପନ ଦିଅନା
କଅଁଳ ମୋ ଏ ଗୁଣ୍ଠରେ ଏତେ ତମ କମ୍ପନ ଦିଅନା । ୦ ।
ମୁଁ ଗୋ ଏକ ଶ୍ରାନ୍ତ ପକ୍ଷୀ ତମ ମନ ଅନନ୍ତ ଆକାଶ
କେତେ ମୁଁ ଉଡ଼ିବି କହ, ଡେଣା ମୋର ହେଲଣି ଅବଶ
ମୁଁ ଏକ ମଉଳା ଚାନ୍ଦ ଏତେ ତମେ ଜୋଛନା ଢାଳନା
ମୁଁ ଗୋ ଏକ ଶ୍ରାନ୍ତ ନାଆ, ତମ ମନ ଅତଳ ସାଗର
କେତେ ମୁଁ ବାହିବି କହ ଆଙ୍ଗୁଳି ମୋ ହେଲଣି ଅଧିର
ମୁଁ ଏକ ଶିଉଳି ଫୁଲ, ଏତେ ତମେ ତରଙ୍ଗ ଦିଅନା । ୨ ।

## ଆଧୁନିକ

ଦିନ ସାରା ନଦୀକୂଳରେ ରହିବାକୁ ଦେଲନି
ରାତି ସାରା ମୋତେ ବ ଗୋ ଶୋଇବାକୁ ଦେଲନି । ୦
ଦିନରେ ତମରି ଚିନ୍ତା ତମରି ଭାବନା
ରାତିରେ ତମରି ସ୍ୱପ୍ନ ତମରି କାମନା
କ୍ଷଣ ଦେଲ ତମେ ଆଜ ଜନମରୁ ଆସନି । ୧ ।
ତମକୁ ଭୁଲିବା ପାଇଁ ଯେତେ ମୋ ବାସନା
ଭୁଲି ପାରିବାରେ ହେଲା ସେ ଅବା ସାଧନା
ମିଛ ଅପବାଦ କେତେ ସହିବ କୁହନି । ୨ ।



## ଆଧୁନିକ

ଫୁଲ ଫୁଟା ଫଗୁଣରେ ଫୁଲ ଆଉ ଫଗୁଣ
କାହାପାଇଁ କିଏ ଆସେ କିଏ ବୁଝେ ମରମ । ୦ ।
ଫୁଲ ଯେବେ ଫୁଟିବାରେ ଆସେ ଧାଇଁ ଫଗୁଣ
ଫଗୁଣ ଆସିଲେ ପୁଣି ହସି ଉଠେ କୁସୁମ
ଫୁଲ ମନ ଫଗୁଣରେ ହୋଇ ଯାଏ ମିଳନ । ୧ ।
ଫୁଲ ଯେବେ ଝରିଯାଏ ଫେରିଯାଏ ଫଗୁଣ
ଫଗୁଣ ଲେଉଟି ଗଲେ ଝୁରିମରେ କୁସୁମ
ଫଗୁଣର ଫୁଲ ଶେଯ ହୋଇ ଯାଏ ମଳିନ । ୨ ।



## ଆଧୁନିକ

ତୁମେ ଯେଉଁ ଚିଠି ସବୁ, ମୋ' ପାଖକୁ ଦେଇଥିଲ
ଚିରିବାକୁ ମନ ନାହିଁ ରଖିବାକୁ ଲାଗେ ଡର । ୦ ।
ସେ ଚିଠିକୁ ଆଜ ଯଦି କେହି କେବେ ଦେବ ପଢ଼ି
ଭାବିବକେ' ଉପନ୍ୟାସ, ଅବା ଗୀତ କେଇଧାଡ଼ି
ଅକ୍ଷରତ ନୁହେଁ ସିଏ ଛବି କେଉଁ ଶିଳ୍ପୀର । ୧ ।
ହୁଏତ ଲେଖିବା ଆଗୁ, କେତେ ତୁମେ ଭାବିଥିବ
କାଗଜ ଗୋଲାପି ରଙ୍ଗ କାଳି ପୁଣି ନୀଳ ହେବ
ଲଫାପା' ଉପରେ ଥିବ ଫୁଲ ଆଉ ଭଅଁର । ୨ ।



## ଆଧୁନିକା

ଗ୍ରେଟ ଗ୍ରେଟ ମିଛ କଥା ଟିକେ ଟିକେ ଦୁଷ୍ଟାମି
ଭାରି ଭଲ ଲାଗେ ମୋତେ ମିଛ ଜମା କହୁନ । ୦ ।
ସୁଲୁ ସୁଲୁ ପବନରେ ନାଲି ନାଲି ଶିହ୍ରନ
କୁହୁ କୁହୁ କରେ ଏଣେ ମିଠା ମିଠା ଫଗୁଣ
ଢଳ ଢ଼ଳ ଆଖିରେ ସେ ନୀଳ ନୀଳ ଚାହାଁଣୀ
ଚୁନା ଚୁନା ସପନରେ ମନ କରେ ମନ କରେ ଗୁଞ୍ଜଣୀ
ଝୁଲୁ ଝୁଲୁ ମହୁଫେଣା ଝର ଝର ଓଠରେ
ହସ ହସ ଲଫାପାରେ ଚୁପୁ ଚୁପୁ ଭାଷାରେ
ଲାଜ ଲାଜ ସେଇ ଚିଠି ଛପି ଛପି ଖୋଲନ
ଜଳ ଜଳ ଆଖି ମେଲି ପଢ଼ି ପଢ଼ି ହସନ । ୨ ।

## ଆଧୁନିକା

ମୋ ଉପରେ ରଗି ଯଦି ମୁହଁକୁ ଗୁନ୍ଥ୍ନା
ଲୁଟଉଛି ଲୁଟଉଛି ଆଉ ମୁରୁଙ୍କ ହସନା । ୦ ।
ମୋତେ ଯଦି ଦେଖି ତମେ ହୁଅ ତମ ତମ
ମେର ଛବ ଦେଖି କିଆଁ ହୁଅ ଛନ୍ଦ ଛନ୍ଦ
ମୋ ଗୀତଖ୍ୟୁ ଗୁଣୁ ଗୁଣୁ ହୋଇବ ଗାଅନା । ୧ ।
ମୋ ଚିଠିକୁ ତମେ ଯଦି ନପଢ଼ି ଚିରନ୍ଥ
ଚିଠି କାଗଜକୁ ଯୋଡ଼ି କାହିଁକ ପଢ଼ନ୍ତ
ଆ'କୁ ତା'କୁ ଅଗୃହକ ଠିକଣା ବୁଝନା । ୨ ।



## ଆଧୁନିକା

ଦିନଟିଏ ନଦୀବେଳାରେ ପଢ଼ିବାକୁ ଓଦଲନ
ପରୀକ୍ଷା ଖାତାରେ ଏଣୁ ଗାରଟିଏ ଟାଣିନ । ୦ ।
ପ୍ରଥା ବନ୍ଧୁ ଆଳରେ ମୁଁ ଉପନ୍ୟାସ ଖୋଲାଇ
ତମ ଚିଠି ଉତ୍ତର ଗୋ ଲେଖିଲି ମୁଁ ଛଳେଇ
ରାତି ପାନ୍ଥ ସଜାଲକୁ ଐଜ ନିଭିବା ଯାଣିନ । ୧ ।
ପ୍ରଶ୍ନ ପତ୍ର ଦେଖି ଯାହା ଲେଖିଲି ମୁଁ ଉତ୍ତର
ପରୀକ୍ଷକ ବୁଝେ ତାହା ପିରତିର ବେଭାର
ଗୁଣୀ ହେବା ବୟସଟା କେଉଁ ଦିନୁ ଗଲାଣି । ୨ ।





## ଆଧୁନିକ

ଇଏ ମୋ ଲେଖିଥି ଚିଠି ଇଏ ତମ ଇଏ
ସମ୍ବୋଧନ ତାର ଏକ ଦୀର୍ଘ ପ୍ରଶ୍ନବାଚୀ । ୦ ।
ଆଗେ ଲେଖୁଥିଲ ଚିଠି ସାଧା କାଗଜରେ
ଏଣୁ ତେଣୁ କେଇପଦ ସକଳ ଭାଷାରେ
ଏବେତ ମହକେ ଚିଠି ରଙ୍ଗ ତା' ଗୋଲାପି । ୧ ।
ଆଗେତାର ସମ୍ବୋଧନ ଥିଲାତ ଆପଣ
ତମେ ଏବେ ଲେଖିବାକୁ ଲାଗେନ ସରମ
ସରମୀ ଇଏ ଚିଠିରେ ଫୁଲପକା ଇଏ । ୨ ।

—*—

## ଆଧୁନିକ

ଅନେକ ଫଗୁଣ ଆସିବ ଜୀବନେ
ମନେ ରଖ କିଆଁ ଗୋଟିଏ ଫଗୁଣେ ।୦।
ଅନେକ ରଙ୍ଗରେ ଝରୁଛି ଜୋଛନା
କହିଁ ମନ ତମ ହୋଇଛି ଉନ୍ମନା
ଆଜ କିଆଁ ଖୋଜ ସେ ଏକ ସପନେ
ପାଇଛ ଯେ ଯାଉ ହଜ ସେ ଗୋପନେ । ୧ ।
ଅନେକ ଫୁଲରେ ଝରୁଛି ସୁରଭି
ଏକ ଫୁଲେ କିଆଁ ହୁଅ ଗୋ ବରଷି
ଆଜ କିଆଁ ଖୋଜ ସେ ଏକ ଗୁଞ୍ଜନେ
ପାଇଛ ଯେ ଯାଉ ହଜ ସେ ଭଜନେ । ୨ ।

## ଆଧୁନିକ

ମୋର ଏସୁଆଲ୍ ଯେତେ ବଡ ହଉଛେହେଉ
ତୁମର ଜବାବ ଖାଲି ଛୋଟ ଏକ ହୁଁ ଉଁ ।୦।
ମୁଁ ଏଣେ ଜଳୁଛି ପଶି ଜଳନ୍ତା ନିଆଁରେ
ତୁମେ ଖାଲି ଲୁଚି ଥିବ ପାଉଁଶ ଭିତରେ
ମୁଁ ଯେତେ ଜଳିଲି ଆଉ ହେଲି ଉହୁ ଉହୁ
ତୁମରତ ଖାଲି ସେଇ ଛୋଟ ଏକ ହୁଁ ।୧।
ମୁଁ ଏଣେ ଯାଉଛି ଖସି ଅତଳ ସାଗରେ
ତୁମେ ଖାଲି ନାଚୁଛ ମୋ ଢେଉରେ ଢେଉରେ
ମୁଁ ଯେତେ ପହଁରି ଥକେ କୂଳ ଛୁଇଁ ଛୁଇଁ
ତୁମରତ ଖାଲି ସେଇ ଛୋଟ ଏକ ହୁଉଁ ।୨।



## ଆଧୁନିକ

ନିତ ନିତ ଫଟୋ ପାଇଁ ଚିଠି ଆଉ ଲେଖନା
ଏତେ ଯଦି ମନ ଆସି ମୋତେ ଦେଖି ଯାଉନା ।୦।
ଫଟୋ ପାଇ ଗଲେ ନେଇ ସାଙ୍ଗ ସାଥି ମେଳରେ
ମୋ ରୂପ ତରଛା ହେବ ଗୀତ ଲେଖା ଆଳରେ
ତମେ ଖୁବ ତମେ ଖାଲି ଏକୁଟିଆ ସିଆଣା ।୧।
ମୁଁ ଶୁଣୁଛି ତମେ କାଳେ ଭଲ ଛବି ଆଙ୍କୁଛ
କେତେଥର ମୋତେ ପରା ସପନରେ ଦେଖୁଛ
ଥରେ ଗୋଟେ ପ୍ରତିଛବି ମୋର ଆଙ୍କି ଦେଉନା ।୨।



## ଆଧୁନିକ

ନିତି ଚିଠି ଲେଖିଲେବି ଫଟୋଟିଏ ଦେଉନା
ସେଇ ପଦେ କଥା ଖାଲି ନିଜେ ଦେଖି ଯାଉନା । ୦ ।
ତମେ ଭାବୁ କରୁଚ କଫଟୋ ତମ ପାଇଲେ
ତମ ରୂପ ଚର୍ଚ୍ଚା ହେବ ସାଙ୍ଗ ସାଥି ମେଳରେ
ଏତିକି ବିଶ୍ୱାସ ତମେ ମୋ ଉପରେ ରଖୁନା
ମୋ ଡାଏରି ପୃଷ୍ଠାରେ ଗୋ ତମେ ହେବ ମଣ୍ଡନା । ୧ ।
ଅନେକ ଥର ତୁମକୁ ସପନରେ ଦେଖିଛି
ଛବି ଆଙ୍କି ଯାଣି ଥିଲେ ଆଙ୍କି ନେଇ ସାରନ୍ତି
ଏକା ସାଙ୍ଗେ ଛିଡ଼ାଥିଲେ ତମେ କ'ଣ ଯାଣନା
ଫଟୋ ନଦେବାର ତମ ଏଇ ଗୋଟେ ବାହାନା । ୨ ।



## ଆଧୁନିକ

ତୁମକୁ କହିଛି ସବୁ ଥିଲା ଯାହା ଗୋପନ
ତମେ ବୁଝିଲ ସେ ସବୁ ସତ ନୁହେଁ ସପନ । ୦ ।
ଛବଣୀ ମୂର୍ଚ୍ଛିଲା ଦେଖି ତମେ କୁହ ରଜନୀ
ଭ୍ରୁରେ ଧଉଁଷ ଦେଲେ ତମେ କୁହ କାମିନୀ
ଓଠରେ ମୋ ହସ ଦେଖି ତମେ କୁହ ଫଗୁଣ । ୧ ।
ବାସର ଯାଣେନା ପାଞ୍ଚି ତମେ କୁହ ପ୍ରେମିକା
ଅଭିନୟ ଯାଣେନା ମୁଁ ତମେ କୁହ ନାୟିକା
ଲାଜ କହୁ ନକହିଲେ ତମେ କୁହ ଗୁମାନ । ୨ ।

## ଆଧୁନିକ

ଲାଜକୁଳୀ କୁଅଁରୀ ମୁଁ କଅଁଳମୋ ମନ
ଏକୁଟିଆ ବୁଲିବାକୁ ଲାଗୁଛି ସରମ ।୦।
ମୁଁଗୋ ସବୁ କେବେ ବୁଲେ ଦରିଆକୂଳରେ
ଢେଉ ସବୁ ବାଦ କରି ଧାଇଁଲେ ପଛରେ
ପଣତ ଓଟାରେ ଏଣେ ଝିଟିଆ ପବନ
ଏଣୁ ଦରିଆ କୂଳକୁ ବଳାଉନି ମନ । ୧ ।
ମୁଁ ଗୋ ସବୁ ମନକରି ବୁଲେ ବଗିଚାରେ
ଫୁଲଙ୍କ ଟହ୍ଲି ଠାପରା କହିଲେ ରସରେ
ଅଧରେ ମୋ ବସି ଅଳି କରେ ଗୁଣୁଗାନ
ତେଣୁ ଆଉ ବଗିଚାକୁ ବଳାଉନି ମନ । ୨ ।



## ଆଧୁନିକ

ତମେ କାଳେ ଆଜି କାଲି କେଉଁଟିଏ ହେଲଣି
ଏକୁଟିଆ ବୁଲିବାକୁ ଏବେ ମନା ହେଲଣି । ୦ ।
ତମ ବଗିଚାରେ ତମ ଗ୍ଲୋଟ ଫୁଲ ଗଛଟି
ବଡ ହୋଇ ଏବେ କାଳେ ଫୁଲ କଢ଼ି ଧରୁଛି
ସେ ଫୁଲରୁ ମିଠା କାଳେ ଭଅଁରବ ଦେଲଣି
ତମ ଓଠ ଏବେ କାଳେ ଖରି ମିଠା ହେଲଣି । ୧ ।
ତମ ପୋଷା ମଇନାଟି ଏବେ ବଡ ହୋଇଛି
ଦିନ ରାତି ସାଥି ପାଇଁ କାଳେ ଝୁରି ହେଉଛି
ତା'ଆଖିରେ ପ୍ରୀତି ରଙ୍ଗ ଢଳ ଢଳ ହେଲାଣି
ତମ ଆଖିରେ ବି ସେଇ ନିଶା ଲାଗି ଗଲାଣି । ୨ ।

## ଆଧୁନିକ

ଆଜକାଲି ତମେ ଆଉ ଇଅଡେ଼ ଆସୁନ
ବୁଲା ବୁଲି କରିବାକୁ ଲାଗେ କି ସରମ ।୦।
ତମେ ଯଦି କେବେ ବୁଲ ଦହିଆ କୂଳରେ
ଢେଉ ସବୁ ଗୋଡ଼ାନ୍ତି ତା' ଚମଣ ଛନ୍ଦରେ
ଝଣତ ଓଣ୍ଠରେ କାଳେ ବାଦୁଆ ପବନ୍
ସେଥି ଲାଗି ଦେଖାଣିଆ ତମ ଏ ସରମ ।୧।
ତମେ ଯଦି ମନ କରିବୁଲ ବଗିଚ୍ଛରେ
ଫୁଲ ଙ୍କ ଟାଣ୍ଡି ଟାପରା କନ୍ଦିଲେ ନସରେ
ତମ ଓଠେ ବସି ଦିଏ ଭଅଁର ଚୁମ୍ବନ
ସେଥିଲାଗି ତମକୁ କି ଲାଗୁଛି ସରମ । ୨ ।



## ଆଧୁନିକା

ମୁଁ କାଳେ ଏବେ ଖୁବ୍ ବଡ଼ ହୋଇ ଗଲିଣି
ଏକୁଟିଆ ବୁଲିବାକୁ ମୋତେ ମନା ହେଲିଣି । ୦ ।
ଗ୍ଲେଟ ଗୋଲାପ ଗଛଟି ଏବେ ବଡ଼ ହୋଇଛି
ବଡ଼ ହୋଇ ଏବେ କାଳେ ଫୁଲ କଢ଼ି ଧରୁଛି
ସେ ଫୁଲରୁ ମିଠା କାଳେ ଭଅଁରବ ନେଲିଣି
ମୋ [illegible] ଏବେ କାଳେ ଘାରି ମିଠା ହେଲିଣି । ୧ ।
ପୋଷା [illegible]କି ମଇନାଟି [illegible] ବଡ଼ ହୋଇଛି
ଲୁଚି ଲୁଚି ଥାଇ ଲାଗି [illegible] [illegible]ଲେ ଗାଉଛି
ତା' ଗୀତରେ ପ୍ରିୟ ସୁର ଭଳି ଭଳ ହେଲିଣି
ମୋ ସ୍ୱରରେ କାଳେ ସେଇ ନିଶା ଭରି ଗଲାଣି

## ଆଧୁନିକ

ଆଗେ ଖେଳୁଥିଲି ଖେଳ ହାତରେ ଗୋଡରେ
ଏବେ ମୁଁ ଖେଳୁଛି ଖେଳ ଆଖିରେ ମନରେ । ୦ ।
ଅନେକ ଖେଳାଳି ହେଲେ ଲାଗୁଛି ଅଡୁଆ
ଏବେ ଖେଳିବାକୁ ଭଲ ଲାଗେ ଏକୁଟିଆ
ଏ ଖେଳ ତ ଦୁଇ ମନ ଗୁନ୍ଥନ୍ତି ଆଖିରେ । ୨ ।
କେତେବେଳେ ଏ ଖେଳରେ ରୁମାଲରେ ଫୁଲ
ଗୀତଲେଖା କେତେ ବେଳେ ପ୍ରିତି ଉପହାର
ଡାକଘରେ ଖେଳ ଚୁଲେ ଚିଠିରେ ଚଥିରେ । ୨ ।



## ଆଧୁନିକ

ଆଖିରେ କହୁଛ ଏଣେ ଆସୁନା ଆସୁନା
ମୁହରେ ବାହାନା କର କରୁନା କରୁନା । ୦ ।
କଥାରେ କଥାରେ ନାମ କେତେ ଆଉ ବାଙ୍କ
'ତଥାପି' 'ଅଥଚ' 'କିନ୍ତୁ' ଏମିତି ଅନେକ
ନବୁଝିଲେ କୁହ 'ବୋକା' ଏଣିକି ବୁଝନା । ୧ ।
ତୁମଠୁ ଶିଖିମୁଁ ଯେବେ କହିଲି ବଙ୍କେଇ
'ଦୁଷ୍ଟ' ବୋଲି ମାରିତ କୁହ ନାକକୁ ଫୁଲେଇ
ଯେମିତି ଗୋଟା ତୁଳସୀ କରୁଛ ଯାଚନା । ୨ ।



## ଆଧୁନିକ

ବଗିଚ୍ଚାରେ ଫୁଲ ନାହିଁ ଅଛି ଖାଲି ଫୁଲରଙ୍ଗ ମାୟା
ଆକାଶେ ମୋ ଜହ୍ନ ନାହିଁ ଅଛି ଖାଲି ଜୋଛନାର ମାୟା ।୦
ହୃଦୟେ ମୋ ପ୍ରେମ ନାହିଁ ଅଛି ଖାଲି ପ୍ରେମର ଉତ୍ତାପ
ମନରେ ମୋ ସ୍ୱପ୍ନ ନାହିଁ ଅଛି ଖାଲି ସପନ ପୁଲକ
ଶିଖାରେ ଆଲୋକ ନାହିଁ ଅଛି ଖାଲି ଆଲୋକର ଛାୟା । ୧ ।
ବୁକେ ମୋ ବନ୍ଧନ ନାହିଁ ଅଛି ଖାଲି ଝରଣର ଗୀତି
ଆଖିରେ ମୋ ଲୁହ ନାହିଁ ଅଛି ଖାଲି ଲୁହର ଅନୁଭୂତି
ପ୍ରଣୟ ଯାଉଛି ଦୂରେ ପାଉଣି ଦେଇ ପାଶୋରଖି ପ୍ରିୟା । ୨ ।



## ଆଧୁନକ

ମନ ବୁଝି ଗଲ୍ପ ଢଙେ ମାନସୀ ସହର
କିଣିବାକୁ କଷ୍ଟ ଭଲ ପ୍ରୀତି ଉପହାର ।୦ ।
ଏ ସହର ଜାଣେ ଖାଲି ମେହଧର ଚଟା
ସ୍ତୃଶଆଡ଼େ ଛନ୍ନ ଛନ୍ନ ଗୃହିଣୀ ଝିଅକା
ରାତିରେ ଆଲୁଅ ଜଳେ ଦିନରେ ଅଂଧାର
ଏ ସହର ରାସ୍ତା ଅଟେ ଅଳତା ଢ଼ଳେଇ
ରୂପର ମାଇଲ ଖୁଣ୍ଟ ବୟସ ଜଣେଇ
ଏଠି ଦିନରାତି ଫୁଲ ପ୍ରଜାପତି ଖେଳ ।୨।



## ଆଧୁନିକା

ଯଉବନ କୋଠରୀରେ ଭେଟେ ମୁଁ, ମୁଁ ତୋତେ
ଆମ ଏଇ ଘରଟିରେ ସଂସାରର ମେଳ ଜନମେ । ୦ ।
ଓଠର ମଶାଣି ଟାଣି ଆମହସ ଶୋଇଗଲେ
ଆଖି ମେଳ ପୋଖରୀରେ ଚାହାଣିର ମୀନ ଖେଳେ
ରୂପବଣ ଫୁଲ ଫୁଟେ ଯୌବନର ଫଗୁଣ ବନେ । ୧ ।
ସ୍ୱର୍ଗେଇ ହାତରେ ଆମ ସ୍ୱପ୍ନକାନ୍ଥ ତୋଳାଇଲେ
ଦୁଇଟି ମନର ଆମ ଝରକା ବି ଖୋଲି ଦେଲେ
କୁନି କୁନି କୁଆଁ କୁଆଁ କଏ କହେ କାନେ କାନେ । ୨ ।

—*—

## ଆଧୁନିକ

ସୂର୍ଯ୍ୟ ଉଠିଲେ ପ୍ରଥମେ ଚୁମ୍ବିବ ମୋ ପ୍ରେମିକା ଗାଁଆଡେ
ଜହ୍ନ ଉଇଁଲେ ପ୍ରଥମେ ଉଇଁବ ମୋପ୍ରେମିକା ଘରଆଡେ
ଆଷାଢ଼ ଆସିଲେ ପ୍ରଥମେ ଚୁମ୍ବିବ ମୋପ୍ରେମିକା କୁନ୍ତଳକୁ
ଫଗୁଣ ଆସିଲେ ପ୍ରଥମେ ଦେଖିବ ମୋ ପ୍ରେମିକା ଅଧରକୁ
ବିହଙ୍ଗ କାକଳୀ ପ୍ରଥମେ ଝରିବ ମୋ ପ୍ରେମିକା କଣ୍ଠସ୍ୱରେ ୧।
ସାଗରର ଢେଉ ପ୍ରଥମେ ଧୋଇବ ମୋପ୍ରେମିକା ପାଦଧୂଳି
ମଳୟ ଆସିଲେ ପ୍ରଥମେ ଖେଳିବ ମୋପ୍ରେମିକା କେଶଗୁଚ୍ଛଇଁ
ଶ୍ରାବଣ ଆସିଲେ ପ୍ରଥମେ ଝରିବ ମୋପ୍ରେମିକା ଆଖିନରେ ୨



## ଆଧୁନିକ

ଦୀପଟିଏ ଜାଳିଥିଲ ମୋର ଏଇ ସମାଧି ଗହ୍ୱରରେ
ଫଳ ନବୁଝୁଣୁ ହାୟ ତାର ଶିଖା ହଜେ ନୈରାଶାରେ ୦
ଯେଉଁଫୁଲ ଦେଇଥିଲ ଭିଜାଇଗୋ ତୁମ ଆଖିଲୁହେ
ସେ ଫୁଲ ସୁରଭି ହାୟ ଦୂରେ ଗଲା ପବନରୁ ସୁଏ
ମଉଳା ପାଖୁଡ଼ା ସଖି ପଡ଼ିଛିଗୋ ପାଷାଣ ବୁକୁରେ ୧
ଯେଉଁ ଗୀତ ଗାଇଥିଲ କଣ୍ଠେଭରି କେତେ ଆକୁଳତା
ସେ ସୁର ସମାଧିଗୃହରେ ଖାଲିଏକ ଅଶ୍ରୁ ନୀରବତା
ବଧିରମୁଁ ସଖି ଆଜି ଲୁହଁରହେ ପଥର ଆଖିରେ ୨



## ଆଧୁନିକ

କାହ୍ନା ତୁମେ ବେଣୁବାଇ ପଡ଼ିଲେଣି ଥକି
ସେ ରାଧା ମୁଁ ନୁହେଁ ସୁରେ ପଡ଼ିବ ଚମକି । ୦
ଇନ୍ଦ୍ରନୀଳ କାଚ ଏବେ ପିନ୍ଧେନା ହାତରେ
ମାଧବୀ କୁସୁମ ଆଉ ଖୋସେନା ଖୋସାରେ
ସପନ ଦେଖିବ ବୋଲି ବୁଜେନା ମୋ ଆଖି । ୧
ଯମୁନା ଘାଟରେ ତୁମେ ନାଉରି ସାଜିଲେ
କଦମ୍ବର ମୂଳେ ରଙ୍ଗୀ କଣେଇ ବାନ୍ଧିଲେ
ମୋର କିବା ଯାଏ ଆସେ ପଥର ମୋ ଗ୍ରୁଡ଼ି ୨



## ଆଧୁନିକ

ତୁମକୁ ମୁଁ କେନ୍ଦ୍ର କରି ଆଙ୍କିଗଲି କବିତା ପରିଧି
ତୁମେ ହାୟ ଦୂରେ ଗଲ ଜୀବନ; ମୋ ବଞ୍ଚିଛି ସମାଧି
ରାତିର ସପନ ହାୟ ହଜିଗଲ ସକାଳ ଛୁଆଁରେ
ଫୁଲର ମହକ ହାୟ ଝରିଗଲ ଧୂଳିର ଶେଯରେ
ମୋ ସ୍ମୃତିରେ ଯା'ଭରିଗଲ ବିରହର ବାଦ୍ଧ ବିସମ୍ବାଦ । ୧
ମନର ମାନସୀ ସାଜ ଭରିଥିଲ ବୁକୁର କଂପନ
ସେ କଂପନ ଥମିଯାଏ କୋଳେ ନେଇ ଶୀତଳ ମରଣ
ସେ ଝଙ୍କାର ଝରେନା'ତ ଯେତେବେଳେ ସେଇ ସୁରସାଧି



## ଆଧୁନିକ

ଆଶ ହୋଇ ବସୁଧର ଆକ୍ଷାଂଶ ଦ୍ରାଘିମା
ଜୀବନ ପଥରେ ଆଜ ଯଉବନ ବନ୍ୟା । • ।
ମନର ଦୂରତା ମାପି ଟାଣିଲ ପରିଧି
ମାନସୀ ସାଜିଲ କେତେ କାମନା କରବୀ
ସପନର ହେମ ପୁଷ୍ପ ଚପଳ ସୁରଭି
ବିନ୍ଦୁ ବିନ୍ଦୁ ଚୁମ୍ବି ଗଲ ଶିଶିରର କନ୍ୟା
ଆଖିର ସାଗରେ ତୋଳି ଇସରର ଢେଉ
ଲାଜର ଫଗୁଣ ଓଠେ ଭରିଗଲ ମହୁ
ମନର ବସନ୍ତେ ମେଲେ ମଳୟର ବେଣା । ୨ ।



## ଆଧୁନିକା

ମଣିଷ ବକ୍ଷୁ କାଢେ ତା' ରକ୍ତ କୋଣା ଠକ
ସାଗରେ ଗଲା ଗଢି ପାଷାଣ କୋଣାରକ ।୦।
ରକ୍ତର ଡାକ ପାଇ ରକତ ଆସିଥିଲା
ଅନ୍ଧ ଅନ୍ଧାରେ ହାସ୍ୟ ସ୍ୱପନ ଲଭିଗଲା
ସିଦ୍ଧି ତ ଖୋଜେନାହିଁ ସାଧନା ଭଗୀରଥ ।୧।
ବାରଣ' ହୃଦୟର ଧ୍ୱଂସା ଜହର ପିଇ
ନୀଳ କଣ୍ଠ ସେ ଗଲା ଚିର ଅମର ହୋଇ
କଳା ପୂଜାରୀ ସେ ଯେ ଶାଶ୍ୱତ ସତ୍ୟ କୃତି ।୨।



## ଆଧୁନିକା

ମୋ ଆଖିର ପ୍ରଶ୍ନ ପାଇଁ ତମ ଆଖି ଉତ୍ତର
ସେ ଉତ୍ତର ପ୍ରଶ୍ନ ଠାରୁ ଅତ୍ୟନ୍ତ ଜଟିଳ ।୦।
ମୋ ଅଧର ପ୍ରଶ୍ନ ପାଇଁ ତମ ଓଠ ଉତ୍ତର
ବସନ୍ତର ଫୁଲ ଆଜ ତା ମନ୍ତୁଁ ମଧୁର
ସେ ଫୁଲ ସୁରଭି ନିଶା କରେ ମୋତେ ବିଭୋର ।୧।
ମୋ ମନର ପ୍ରଶ୍ନ ପାଇଁ ତମ ମନ ଉତ୍ତର
ସମୁଦର ନୀଳ ଠାରୁ ଆହୁରି ଗମ୍ଭୀର
ସେ ନୀଳିମା ମାୟା ଆଜି କରେ ମୋତେ ଅଧୀର ।୨।



## ଆଧୁନିକା

ଆଖି ମୋତେ ଦେଖାଇଲୁ ତୁମକୁ ଯେ ସପନେ
ମନ ମୋତେ ନେଇଗଲା ତୁମ ମନ ଅଗଂନେ ।୦।
ତୁମ ବନ ହରିଣୀ ଗୋ ଛନ୍ଦ ରଚି ଚରଣେ
ନାଚି ନାଚି ବୁଲିଗଲ କେତେ ଗିରି କାନନେ
ମୋ ବଉଦ୍ଧ ବଂଶୀ ସୁର ଝରେ ହାୟ ବିଜନେ । ୧ ।
ତୁମେ ମୀନ ନୟନା ଗୋ ଆଖିଠାରି ଗୋପନେ
କୁନ୍ତଳ ହଲାଇ ଲୁଚ ମାଳିମାର ଗହନେ
ନିରିଜନ ବେଳାରେ ମୁଁ ତୁମ ପାଇଁ ବାହୁନେ । ୨ ।



## ଆଧୁନିକା

କାଚ ଝଆରର ଅଭିଶପ୍ତା ମୁଁ ଗୋ ରୂପବନ୍ତୀ ମହାରାଣୀ
ଘୁଣ୍ଟହ୍ନବ ମୋର ଦେଖିବାକୁ ଆସେ ରକ୍ତ ଲୋଲୁପ ପ୍ରାଣୀ ।୦।
କାହିଁକି ବିଧାତା ଦେଲ ଯଉବନ ଏତେରୂପ ଏତେ ଶୋଭା
ଜୀବନ ପବନର ପ୍ରଣୟ ପିପାସା ବୁଝେନାହିଁ ନଶୀବକା
ମୋର ପାଇଁ ଅଳ ଗ୍ଲୁରଖାଉ ହୁଏ ନଜପୂତନାର ଭୂମି ।୧।
କୁଳବନ୍ତୀ ମା'ଗୋ ଅମ୍ବା ତୁ ମୋତେ ଦେଲୁ ତ ସାହାସ ଦଅ
ହୀନ ପଶୁ ଘୃଣ୍ୟ ପରଶ ଆଗରୁ ପରାଣ ମୋ ଲୁଟିନିଅ
ପଞ୍ଚ ଶର ବାଣ ରଣ ଅଂଗନେ ସାହା ହେବେ ଜୟଲକ୍ଷ୍ମୀ ।୨।



## ଆଧୁନିକ

କହିଯାଅ ପ୍ରିୟ ଏ ମାଧବୀରାତେ ଦେଖି କେଉଁ ଅପରାଧ
ଅବାଞ୍ଛିତା ସମ ଠେଲି ଦେଇ ଦୂରେ ଫେଲିଲକ ଗଉରବ ।୦ ।
ଖୁନ୍ତୁ ଲୋଚଣ ମୁଁ ଥରଥର ଦୁଇ ଆଖି
ତମର ଅନ୍ତର ଉଷ୍ମ ଆବେଶ ବାନ୍ଧିଥିଲ ମୋତେ ସଖି
ତମକୁ ହରାଇ ଏ ହୃଦୟୁ ଭରେ
ଅବଦହିଲା ଅବସାଦ । ୧ ।
ବ୍ରତକଣା ମୁଁ ଗୋ ଆଶାର ସରତ ଧାରେ
ତମ ମଧୁଚନ୍ଦ୍ର ଜୋଛନା ପିଆସୀ ଖୋଜୁଛି ମୁଁ ନିରବରେ
ଜୀବନ କୁଂଜେ ମୁଁ ଚକୋରୀ ଯୂଥିକା
ଢାଳିଲ ମୋ ସଉରଭ । ୨ ।

## ଆଧୁନିକ

ଗୋଟିଏ ମନର ମାନଚିତ୍ର ତଳେ
ଅନେକ ଆଶାର ଦେଶ ମହାଦେଶ ଦେଖି
ଅନାମିକା କେଉଁ ଅଜଣା ନାଇକେ
ଚାଇଁଲିନି ତୁମ କୁହୁକ ପୁରର ସୁର ।୦ ।
ପାରି ହୋଇ କେତେ କାନନାର ନଈ
କେତେ ଗହ୍ୱର ବାଲୁଚର କେଇଁ
କୁହୁକମୟ ତୁମ ଭ୍ରୂରୁ ଭଉଁରର
ଭଗୀରଥ ପରି ଗଙ୍ଗାପଛେ ମରେ ଧାଇଁ । ୧ ।
କେତେ ଫୁଲେ ଲେଖି ବାନ୍ତର ଚିଠି
ମଳୟ ବାଶାରେ ଗାଇ ତୁମ ଗୀତ
ପୁର୍ଣ୍ଣିମା ଗୋ ତୁମ ସୁରଖା ନଚାଉଛି
କଣ୍ଠକେ ଜଡେ ମୁଁ ପରାଗ ଟିକିଏ ପାଇଁ । ୨

## ଆଧୁନିକ

ପ୍ରଦୋଷ ପ୍ରଦୀପ ମୁଁ ଗୋ ବାସରେ କି ଜଳିବି
ଶରତ ଶେଫାଳି ମୁଁ ଯେ, ବସନ୍ତେ କି ଫୁଟିବି । ୦ ।
ମୁଁ ଗୋ ଏକ ଦେବଦାସୀ ମନ କି ମୋତେ ସଜାନା
ଧ୍ୟାନରତା ତାପସୀ ମୁଁ ପ୍ରତୀକ୍ଷାବାଳା କୁହନା
ତମ ପ୍ରଣୟର ସୀମା, ମୁଁ କି ଛୁଇଁ ପାରିବି । ୧ ।
ସାଗରିକା ଭାବ ମୋତେ, ମାଧବୀର ଭାବନା
କାନନିକା କହୁ ମୋତେ କାନନରେ ଖୋଜନା
ଶିବ ପ୍ରିୟ ନିର୍ଝର ମୁଁ, ଗୁଞ୍ଜନ କି ଶୁଣିବ । ୨ ।



## ଆଧୁନିକ

ହେ, ମୋର ପ୍ରିୟତମ ମନ ଆଖି ଦୁଇଟି
ତମେ ମୋତେ କରିଛଗୋ କଳପନା ବିଳାସୀ । ୦ ।
ସେଇ ଭୂରୁ ଭଉଁରିରେ ନାଚେ ବନ ମୟୂରୀ
ସେଇ ଆଖି କଜ୍ଜଳରେ ସ୍ୱପନର କାହିଁରି
ସେଇ ମୋର ପ୍ରେମର କାବ୍ୟ ଭାଷା ଦୁଇଟି । ୧ ।
ଗୋଧୂଳି ସ୍ୱପ୍ନର ତଳେ ସେଇ ଦୁଇ ପ୍ରଦୀପ
ଲାଜ ମିଶା ପଲକରେ ଅନୁରାଗ ପ୍ରଲେପ
ମୁଖର ପଲ୍ଲବ ବନେ ଯେସେ ଦୁଇ କପୋତ । ୨ ।



## ଆଧୁନିକା

ତମେ ଖାଲି ଋଷିଗଣ କଏ–କଣ–କାହିଁକି
ଭ୍ରଷ୍ଟବାର୍ତ୍ତୀ କୁହୁକମନ୍ତ୍ର ପରିଚିତ ଦେବ କି ? । ୦ ।
ଉଷାରେ ପ୍ରଦୋଷ ତୁମେ ଉଦୟରେ ଅସ୍ତରାଗ
ଅମାବାସ୍ୟା ଜହ୍ନ ତୁମେ ତମସାରେ ଦୀପ୍ତିରାଗ
ବସନ୍ତରେ ପୁଷ୍ପ ହେମ ପୁଷ୍ପଗୁଚ୍ଛେ କେତକୀ । ୧ ।
ତୁଷାର ବୁକୁରେ ନିଆଁ ଅନଳରେ ହିମକଣା
ଆଶାରେ ନିରାଶା ତୁମେ ନିରାଶାରେ ଆଶା ପୂର୍ଣ୍ଣ ।
ସୁଧେ ସୁରେ ଛନ୍ଦ ତୁମେ ଛନ୍ଦରେ ଛିନ୍ନ ଗୀତ । ୦ ।



## ଆଧୁନିକା

ସମସ୍ତ ବେଳାରେ ବୁଲି ସାଉଁଟିଲ ସ୍ମୃତିର ସାମୁକା
କିନ୍ତୁ ତହିଁ ଅଭିନୟ କିନ୍ତୁ ସତ୍ୟ କିନ୍ତୁ ପ୍ରତୀକ୍ଷା । ୨ ।
ସେଇ ଦୁଇ ନୀଳ ଆଖିରେ ଜୀବନର ସଂଚିତ ସପନ
କୁଞ୍ଚିତ କୁନ୍ତଳ ଶୋଭା ଥର ଥର ଅଧର କଂପନ
କେବେ ଥିଲ ପ୍ରଣୟିନୀ ପୁଣି କେବେ ପ୍ରିୟାର ଭୂମିକା । ୧ ।
ଅନେକ ପାଖରେ ଥିଲି ହାୟ ଆଜି ଅନେକ ଦୂରରେ
ଆଶା ବାରି ଭୂଲିବକି ଆଜି ଏଣୁ ଆଦର କଣ୍ଠରେ
କେତେକ ଅଭାବ ଗପ ଆଉ କିନ୍ତୁ ଅକୁହା କବିତା । ୨ ।



## ଆଧୁନିକ

ସେଦିନ ମୁଁ ଦେଖୁଥିଲି , ଏକୁଟିଆ ହସୁଥିଲା ଫୁଲ
ଆଜ ମୁଁ ଦେଖୁଛି ଖାଲି , ଫୁଲ ଆଉ ପ୍ରଜାପତି ଖେଳ ।।
ସେଦିନ ମୁଁ ଦେଖୁଥିଲି , ଜହ୍ନ ଆଉ ରୂପେଲି ଜୋଛନା
ଦେଖିନ ନ ଥିଲି କେବେ , କଇଁଫୁଲ ଫୋଟା ଆନମନା
ଆଜି ଲୁଚି ଲୁଚି ଦେଖେ , ଚାନ୍ଦ ଆଉ କୁମୁଦର ଖେଳ ।୧
ସେଦିନ ମୁଁ ତ ଦେଖୁଥିଲି , ସୂର୍ଯ୍ୟ ହସେ ଦିଗନ୍ତର କୋଳେ
ଦେଖିନ ନ ଥିଲି କେବେ , ସୂର୍ଯ୍ୟମୁଖୀ ଲାଜରେ ଝାଉଁଳେ
ଆଜି ଭାରି ଭଲ ଲାଗେ , ସୂର୍ଯ୍ୟ ଆଉ ସୂର୍ଯ୍ୟମୁଖୀ ଖେଳ ।୨



## ଆଧୁନିକ

ସୁଧା ପାନ ପାତ୍ରେ ମୋତେ ପିଇଲି ଜହର
ପୁଷ୍ପ ବାଟିକାରେ ଦେଲି କଣ୍ଟା ଉପହାର ।୦।
ବସନ୍ତେ ମୋ ବୁକେ ଭରି ବଇଶାଖି ଦାହ
ହସ ମନେ ଉପହାର ଦେଲି ଆଖି ଲୁହ
ଜୋଛନା ମିଶିଥେ ଦେଲି ଘୋରାଇ ଅନ୍ଧାର ।୧।
ଭୁଲିକା ଧରାଇ ଦେଇ ରଂଗ ନେଲି ଲୁଟି
ରାଜାର ଆସନ ଦେଇ ଥାଳ ଦେଲି ଟେକି
ବଂଚିତ କି ମୋର ସଖି ଲାଂଛିତ ହେବାର ।୨



## ଆଧୁନିକ

ତୁମେ ତ କହୁଛ ତୁମେ ପ୍ରଣୟ ଜାଣେନା
ତେବେ ଏତେ କାହିଁ ହୁଅ ତୁମେ ଆନମନା । ୧ ।
ଓଠରେ ବୋଲନା ତୁମେ ହସର ଫଗୁଣ
ଆଖିରେ ମାଖନା ତୁମେ କୁହୁକ ଅଂଜନ
କବରୀ ଫିଟାଇ ତୁମେ ଗୁରନ୍ଥି ବୁଣନା
ତେବେ ଏତେ କାହିଁ ତୁମେ ମିଛେ ଆନମନା । ୧ ।
ଓଠରେ ନକଲି ତୁମେ କହୁଛ ଆଖିରେ
ଦାନରେ ସପନ ଦେଖ ନ ଦେଖି ରାତିରେ
ନାଁ' ନାଁ' କୁହ ଯାହା 'ହଁ' ରବାହାନା
ନ ହେଲା କାହିଁକି ମିଛେ ହୁଅ ଆନମନା । ୨ ।



## ଆଧୁନିକ

ତୁମେ ଯେବେ ପାଶେ ଥାଅ, ଶ୍ରାବଣ ମୋ ଫଗୁଣ
ତୁମ ବିନା ଏକାକି ମୁଁ, ଫଗୁଣ ମୋ ଶ୍ରାବଣ ।୧।
ତୁମରି ପରଶ ଛୁଇଁ, ସମାଧି ମୋ ଫୁଲବନ
ତୁମରି ଗୁହାଳି ଗୃହ୍ନି, ଚମଯା ମୋ ଚନ୍ଦ୍ରସ୍ନାନ
ତୁମେ ଯେବେ ପାଶେ ଥାଅ, ମରୁ ମୋ ସାଗର ସମ
ତୁମ ବିନା ଏକାକି ମୁଁ ସାଗର ସାହାରା ସମ ।୧
ତୁମ ମଧୁ ସ୍ୱର ଶୁଣି, ମୂକ ବୀଣା ମୋ ମୁଖର
ତୁମ ମଧୁ ରୂପ ଦେଖି, ସୁପ୍ତ ଦେହେ ଶୀତ୍କାର
ତମେ ଯେବେ ପାଖେ ଅଛ; ଅନଳ ମୋ ଚଂଦନ
ତୁମ ବିନା ଏକାକି ମୁଁ ଚଂଦନ ଅନଳ ସମ ।୨

## ଆଧୁନିକ

ମୁକ୍ତି ମୋତେ ହେଲ ଯାହା ସିଏ ହେଲା ବଂଧନ
ବଂଧନ ସେ ନୁହେଁ ସାଥି ମୋର ପ୍ରିୟ ଫଗୁଣ । ୦ ।
ଅପମାନ ହେଲ ଯାହା ନସତ ମୋର ଗରବ
ଅପବାଦ ହେଲ ନୁହେଁ ତମ ପ୍ରିୟ ସରଗ
ତମ କୁଆଁ କଂଟକ ତ ମୋର ପାଇଁ କୁସୁମ । ୧ ।
ମିଳନ ପିଆସୀ ମୋତେ ଦେଲ ଯେଉଁ ବିରହ
ମୋ ବିରହ ମିଳନ ମୋ ଭିନ୍ନ ନେତେ ନସନେହ
ତମ ଅନଳର ଦାହ ମୋର ପାଇଁ ମିଳନ । ୨ ।



## ଆଧୁନିକ

ତୁମ ଦେହ ସମୁଦ୍ରର ମୁହଁଟିଚ ଚନ୍ଦ୍ରଭାଗା ସୂର୍ଯ୍ୟ
କଳା ଭୃରୁ ପଉଦାରେ ଗୁହାଁଣୀର କୋଟି କାରୁକାର୍ଯ୍ୟ ।୦
ଓଠ ହସ ଅଗଣାରେ ସଜ ଫୁଲ କୁଟେଇ ପଡ଼ୁଚ
ନବଶି ଗାତ୍ରରୁ ଅବା ବାସନାର ଜୋଛନା ଝରୁଚ
ମନର ମାନସୀ ଖୋଜେ ମିଳ ମିଳ ସପନ କୌମୂର୍ଯ୍ୟ ।୧
ପ୍ରଥମ ଫଗୁଣ ବନେ ତୁମରତ କପୋଳ ଘୁଣପୁ
ଅମାନିଆ ଯୌବନ ଆଣେ ବ୍ୟାଧି ଅପବାଦ ଭୟ
ଜୀବନର ମାଟି ମେଘେବାହୁଛି ମୁଁ ରଂଗର ଏ ତୂର୍ଯ୍ୟ ।୨।



## ଆଧୁନିକ

ପାପୁଲିର ଚଟାଣରେ, ମେହେନ୍ଦିର, ଚିତା ତ ଲେଖୁଛ
ଆଖିର କାଚକୁ ଚାହିଁ, ମନରସେ, ମୁହଁକୁ ଦେଖୁଛ । ୦ ।
ସ୍କୁଲର ସେ ପଢ଼ାଘରେ, ଅପନଇ, ଛନ୍ଦବନ୍ଧ ଖୋଲ
ମନଚେଷ୍ଟା-ବର୍ଣ୍ଣବୋଧ, ପାଠପଢ଼ା, ଗଲ ଏବେ ଭୁଲି
ଓଠରେ ଜ୍ୟାମିତି ଆଙ୍କି, ହସଧରି, ତ୍ରିଭୁଜ ମାପୁଛ । ୧ ।
ବପୁସର-ସିଲଟରେ, ଏଣୁ ତେଣୁ, ଗାରସବୁ ଟାଣି
ଯଉବନ ଯାତକରୁ, ଶୁଭାଶୁଭ, ଫଳ ଗଲ ଜାଣି
ଫଗୁଣ-ବେଦୀରେ ବସି, ଝରାଫୁଲ, କଉଡ଼ି ଖେଳୁଛ । ୨ ।



## ଆଧୁନିକ

ମୋ ନିଜ ଆଖିରେ ଆଜ ମୋର ମୁହଁ ଦେଖିଛି
ମୋ ନିଜ ଓଠରେ ଆଜ ମୋର ପାଇଁ ହସିଛି । ୦ ।
ମୁଁ ଆଜ ମୋ ମନକୁ ବାର ବାର ପ୍ରଶ୍ନରେ
ମୋ ନିଆଁରେ ଆଲ ନିଜେ ମୁଁହିଁ ତ କୁହୁଳେ
ମୋ ମନର ନଈ ବନ୍ଧ ମୋ ସାଗରେ ମିଶିଛି । ୧ ।
ମୁଉଁ ଆଜ ଲୁଚିଯାଏ ମୋର ନିଜ ଗୁଇରେ
ମୁଉଁ ପୁଣି ମୋତେ ପାଏ ମୋର ନିଜ ଆଖିରେ
ମୋ ମନର ଭଉଁ ଫୁଲେ ମୋ ଜୋଛନା ଝରିଛି । ୨ ।



## ଆଧୁନିକ

ଦିନଥିଲା ପ୍ରିଏ ବହୁଦୂରେ ଥାଇ ଭାବୁଥିଲି ଅଛୁ ପାଖରେ
ଆଜି ସେତ ମୋର ପାଖରେ ଥାଇବ ଭାବୁଛି ସେବେହୁ ଦୂରରେ ।୦।
ଦିନ ଥିଲା ପିଏ ନିତି ନିତି କାଳେ ଦେଖୁଥିଲା ମୋତେ ସପନ
ଆଖିରେ ଆଖିରେ କହୁଥିଲା ମୋତେ ନ ରଖି କିଛି ସେ ଗୋପନ
ପଚୃତି ଦେହର ଆଜି ମୁଁ ଥକାଲେ ମୋତେ ସେତନାହିଁ ପଚାରେ ।୧।
ଦିନ ଥିଲା କାଳେ ମୋ ଛାଇ ପଡିଲେ ଦେଖୁଥିଲା ପିଏ ଆଲୁଅ
ମୋ ଆଖି ସୁରୁଯ ଦେଖି ଦେଖି ତାର ଦସୁଥିଲା ମୁହଁ ପଦୁଅ
ଷୋଳପଣ୍ଡ ଆଜି ବୃନ୍ଦିମା ମୁଁତାଳେ ତେବେବ ତାକଇଁ ମଣ୍ଡଳେ



## ଆଧୁନିକ

ସୁଷମା ମୋ ଗଲ୍‌ନେଇ ସାଥେ ତାର ସୁଷମା
ସୁଷମା ପିଆସୀ ମୁଁ ଯେ ଝୁରେ ତାର ସୁଷମା ।୦।
କଥା ସେତ କହେ ନାହିଁ କହେ ଖାଲି କବିତା
ସେଥି ପାଇଁ ତାକୁ ମୁଁ ତ ଡାକୁଥିଲି କବିତା
ସେ କବିତା ଗଲ ଦୂରେ କବିତା ମୁଁ ଲେଖେନା ।୧।
ତା ଦେହେ ଫଗୁଣ ଥିଲା ଡାକୁଥିଲି ଫାଲ୍‌ଗୁନୀ
ଫଗୁଣ ଆସିଲା ପିଲା ନାହିଁ ମୋର ଫାଲ୍‌ଗୁନୀ
ଏଣୁ ସେ ଫଗୁଣ ଫଗୁଣ ଫଗୁ ମୋତେ ଭଲ ଲାଗେନା ।୨।

—*—

## ଆଧୁନିକ

ତୁମେ ତ ସୁରଭି ମୋ ପଲ୍ଲବ ପୁଟରେ ବାରେ କେବେ ଆସନାହିଁ,
ଗୁଂଜନ ଗୋ ତୁମ ମଧୁର ଆଳାପ ମୋ କେତକୀ ପୁଟରେ ନାହିଁ ।୦
ତୃଷାର ନାଆଁରେ ନିଜକୁ ଜାଳିମୁଁ ଜଳିଯାଏ ଅବହେଳେ
ସମ ବେଦନାର ଲୁହ ଟୋପିଏ ବି ଢାଳିଲେନି କେହି ବାରେ
ସମାଧି ଉପରେ ମୋର ଛବି ଦେଖି ମୋ ଆଖି ଝଡ଼ୁଛି ଲୋଇ ।୧
ମଳିର ଫୁଲ ମୁଁ ମାଟିର ବସନ୍ତେ କେତୋଟି ମୁହୂର୍ତ୍ତ କାଟି
ସାଥି ହୀନା ମୁଁ ଗୋ ନେଉଛି ବିଦାୟ ଲୁହରେ ଭିଜାଇ ଆଖି
ଆଶ୍ୱାସ କେବେ ପାଇନି ଜୀବନେ ଉପହାସେ ଝରିଯାଇ ।୨



## ଆଧୁନିକ

ବର୍ତ୍ତମାନ ମୁଁ ଅତୀତକୁ ଖୋଜେ ନାହିଁ
ଭବିଷ୍ୟତ ଲାଗି ଭଳେ ବି ତ ଖୋଜୁନାହିଁ ।୦।
ଫୁଲ ମୁଁ ଫୁଟିଛି ସୁରଭି ମୁଁ ବିତରିବି
କହି କେବେ ଥିଲି ସେଦିନ ମିଳନ ଖୋଜି
ଝରି ଯିବି ପୁଣି ଆସନ୍ତା କାଲି ମୁଁ
ତଳେ ମୋ ଶୋଚନା ନାହିଁ ।୧।
ନଦୀ ମୁଁ ବହୁଛି ନିରନ୍ତର ନୀରବରେ
ମନେ ନାହିଁ ମୋର ଜନମିଲି ଗିରି କୋଳେ
ମରି ଯିବି ପୁଣି ସାଗର ବୁକୁରେ
ନିଜରେ ଆହୁତି ଦେଇ ।୨।

## ଆଧୁନିକ

ଶିଖି ମୁଁ ଯାଉଛି ଜଳିବାର କଥା କାମନା ଯାଉଛି ଛାଡ଼ି
ମରି ମୁଁ ଯାଉଛି ଜୀଇବାର କଥା ବାସନା ଯାଉଛି ଛାଡ଼ି ।
ଅଂଧାରେ ହଜିଛି ଆଲୋକରେ କଥା ଜୀବନର ରଂଗରେଖ
ମରୁରେ ଲୋଟୁଛି ସାଗରରେ କଥା ପବନର ଛନ୍ଦ ଗାଇ
କଣ୍ଟକେ ଜଳୁଛି ଫୁଲଠାରେ କଥା ସୁରଭି ଦେଉଛି ଭରି ୧
ମୂକ ମୁଁ ହୋଇଛି କଥାକାରେ କଥା କଥାର ଶେଷ ଟାଣି ଦେଇ
ଜଡ଼ ମୁଁ ରହୁଛି ସଂଗୀତରେ କଥା ସୁରର ମୁର୍ଚ୍ଛନା ନେଇ
ଝରି ମୁଁ ଯାଉଛି ବସନ୍ତରେ କଥା ସବୁଜିମା ଶିଖାଇ ୨



## ଆଧୁନିକ

ତୁମେତ ଦେଖନା ନରଜନ ବନେ ଝରିଯାଏ ଝରାଫୁଲ
ତୁମେତ ବୁଝନା ସାଥିହରା ମନେ ଘେରିଯାଏ ଅଂଧକାର
ତୁମେକି ଶୁଣିଛ ଘନ ଅଂଧକାରେ ଭଙ୍ଗାବୀଣା କୋକିଳଗୀତ
ତୁମେକି ଶୁଣିଛ ଘନ ଅଂଧକାରେ ଝିଙ୍କାରିର ଚିତ୍କାର
ଶେଫାଳି ଝରଇ ଶିଶିର ଲୁହରେ ବୁଝିକି ବେଦନା ଭାର ୧।
ତୁମେକି ଶୁଣିନା ମରୁବୁକେ ଲୋଟେ ହାହାକାର କେଉଁ ପାନ୍ଥ
ତୁମେକି ଦେଖନା ନିଜରେ ଜଳାଇ ଲିଭିଯାଏ କେଉଁ ଦୀପ
କହିବା ଆଗରୁ ମୂକ ହୁଏ ଯିଏ ବୁଝିକି ବେଦନା ତାର ୨।



## ଆଧୁନିକ

ଥରୁକ ଦେଖାରେ ସବୁ କହୁମୁଁ ସାଙ୍ଗିଛି
ଆଜ ପୁଣି ଲେଖିବାକୁ ଭାଷା ନାହିଁ ଖୋଜୁଛି । ୨ ।
ସ୍ୱର୍ଣ୍ଣ ହଂସ ସେ'ଖବର ଦମୟନ୍ତୀ ଠାରୁ
ନଳ ଠାରେ ଦେଇଥିଲା ପଦ୍ମ ଭଂଖୁଣ୍ଡାରୁ
ତା'ଠାରୁ ଅଧିକ ମୁଁ ଯେ ତୁମକୁ କହୁଛି । ୧ ।
ରାଧା ଯହା ଲେଖିଥିଲା ଆଖିର କଜ୍ଜଳେ
କୁଞ୍ଜ କାନନୁ କୃଷ୍ଣଙ୍କୁ କେତକୀ ଦଳରେ
ତା'ଠାରୁ ଅଧିକ ମୁଁ ତ ତୁମକୁ କହୁଛି । ୨ ।

—*—

## ଆଧୁନିକ

ଆଖି ମୋତେ ପହ୍ନଲୁ ଦେଖାଇଲୁ ସପନ
ଫୁଲ ମୋତେ ପହ୍ନଲୁ କହିଗଲୁ ଫଗୁଣ । ୨ ।
ମଧୁର ମଧୁର ମଧୁରତା କେତେ ମନେଦେଲା ଭରି
ଅଧିର ଅଧିର ଅଧିରତା ମୋତେ ଦେଲା ପୁଣିଯାଇ
ଭାବନାରେ ହଜାଇ କଲା ମୋତେ ମଗନ । ୧ ।
ଚପଳ ଚପଳ ଚପଳତା କେତେ ଉଲ୍ଲସେ ଭରି
ବିଫଳ ବିଫଳ ବିଫଳତା ମୋତେ ଦେଲା ପୁଣିଧାରି
ଅଜାଣାରେ ମନାଇ ଦେଲା ପୁଣି କଷଣ । ୨ ।



## ଆଧୁନିକା

ଭଅଁର ଆଖିର ପତା'ରେ ପତାରେ କୋଟିଏ ଯୁଗର ସପନ
କାଳ କୁନ୍ତଳ ତୁମ କବରୀ ଫାଶରେ ଭରି କେତେ ମାୟା ମୋହନ
ଛନ୍ଦାରେଗୋ ତୁମ ଚପଳ ଛନ୍ଦରେ ଜଉଳା ନିଶୀଥ ଜୋଛନା
ଅବଚେତନର ଗହନ ମନରେ ଉନ୍ନତରଙ୍ଗିତ ଚେତନା
ସୋହ୍ନମା ଗଣ୍ଡରେ ତୁମ ନୀଳଭୂରୁ ମାଝେ ଭୃଙ୍ଗନର ଅଂଜନ ୧
ରଂଚନା ଗୋ ତୁମେ ମାୟା ମଧୁବନେ ବେଗବତୀ ଗୀତନର୍ତ୍ତର
ବୀଣା ଜଣା କଣ୍ଠେ ନନ୍ଦନା କଳୀରେ ମଗ୍ନଣରେ କାବ୍ୟ ମୂର୍ଚ୍ଛର
ଶଂଖ ଧବଳ ଚୌଠି କାମନ୍ତୁମେ ଅଜନ୍ତାର ଲାସ୍ୟ ମଗନ ୨



## ଆଧୁନିକା

ତମେତ ଆସିଲ ନାହିଁ ବସନ୍ତକୁ କିଆଁ ପଠାଇଲ
ତମେତ ଗାଇଲ ନାହିଁ କୋଇଲିକୁ ମିଛେ ଶିଖାଇଲ । ୦ ।
ନାଚର ନୁପୁର ତମ ଏ ଝରଣା ମିଛେ ଖାଳଝରେ
କବରୀ ସାଜନା ତମେ ଏ ଜୋଛନା ଝରଇ ବଫଳେ
ଓଠେ ତମ ହସନାହିଁ ଏତେ ଫୁଲ କିଆଁ ଫୁଟାଇଲ । ୧ ।
ରୂପର ଆଦ୍ଭୁତ ଦେହ ଯଉବନ ଫେରିଯାଉ ଦୂରେ
ଆଖିର ମଦିରା ନାହିଁ ସପନରେ ହଜାଅ ତମିରେ
ବିଷର ପିଆଲା ଧରି ପଦୁମଧୁ କିଆଁ ଚଖାଇଲ । ୨ ।



# ଗୀତିଗୁଚ୍ଛର ଶୁଦ୍ଧିପତ୍ର

| ପୃଷ୍ଠା | ଗୀତ | ଧାଡ଼ି | ଅଶୁଦ୍ଧି | ଶୁଦ୍ଧି |
|---|---|---|---|---|
| ୭ | ୨ୟ | ୩ୟ | କବଣ | କବଣରେ |
| ୧୦ | ୨ୟ | ୧ମ | ଘଣ | ଘୃଣ |
| ୧୨ | ୧ମ | ୫ମ | ଭଅଁରର | ଭଅଁର |
| ୨୫ | ୧ମ | ଶେଷ | ଅତ୍ମଶବ | ପତ୍ମଶବ |
| ୨୩ | ୧ମ | ୫ମ | ଆସନା | ଆସନ୍ନ |
| ୨୪ | ୨ୟ | ୬ଷ୍ଠ | ଚୂନା | ନୂନା |
| ୨୪ | ୨ୟ | ୬ଷ୍ଠ | ମନଳରେ | ମନକରେ |
| ୨୬ | ୨ୟ | ୯ମ | —ଜ୍ଞ | ଆଜ୍ଞ |
| ୩୨ | ୧ମ | ୫ମ | ଶିଖାରେ ଆଲୋକ ନାହିଁ | ଅଛୁଖାଲି ଆଲୋକର ଘୁପ୍ସା |
| ୩୨ | ୧ମ | ଶେଷ | ପାଶେରଖି୨ | ପ୍ରଣୟପୂର୍ଣ୍ଣ ପାଖେରଖି |
| ୩୬ | ୧ମ | ଶେଷ | ସତ୍ୟକୃତ | ସତ୍ୟବ୍ରତ |
| ୩୮ | ୧ମ | ୬ଷ୍ଠ | ଅସାର ସରତ | ଆଶାର ସଙ୍ଗତ |

